# ସୂଚୀ

## ଅପ୍ରେଲ-ମଇ - ୨୦୨୦



❖ ❖ ❖

# ବନ୍ଦେ ଉତ୍କଳ ଜନନୀ

ବନ୍ଦେ ଉତ୍କଳ ଜନନୀ
ଚାରୁହାସମୟୀ ଚାରୁ ଭାଷମୟୀ, ଜନନୀ, ଜନନୀ, ଜନନୀ ।
ପୂତ-ପୟୋଧି-ବିଧୌତ-ଶରୀରା,
ତାଳତମାଳ-ସୁଶୋଭିତ-ତୀରା,
ଶୁଭ୍ରତଟିନୀକୂଳ-ଶୀକର-ସମୀରା
ଜନନୀ, ଜନନୀ, ଜନନୀ ।।

ଘନ ବନଭୂମି ରାଜିତ ଅଙ୍ଗେ,
ନୀଳ ଭୂଧରମାଳା ସାଜେ ତରଙ୍ଗେ,
କଳ କଳ ମୁଖରିତ ଚାରୁ ବିହଙ୍ଗେ
ଜନନୀ, ଜନନୀ, ଜନନୀ ।।

ସୁନ୍ଦରଶାଳି-ସୁଶୋଭିତ-କ୍ଷେତ୍ରା,
ଜ୍ଞାନବିଜ୍ଞାନ-ପ୍ରଦର୍ଶିତ-ନେତ୍ରା,
ଯୋଗୀଋଷିଗଣ-ଉଟଜ-ପବିତ୍ରା
ଜନନୀ, ଜନନୀ, ଜନନୀ ।।

ସୁନ୍ଦର ମନ୍ଦିର ମଣ୍ଡିତ-ଦେଶା,
ଚାରୁକଳାବଳି-ଶୋଭିତ-ବେଶା,
ପୁଣ୍ୟ ତୀର୍ଥଚୟ-ପୂର୍ଣ୍ଣ-ପ୍ରଦେଶା
ଜନନୀ, ଜନନୀ, ଜନନୀ ।।

ଉତ୍କଳ ସୁରବର-ଦର୍ପିତ-ଗେହା,
ଅରିକୁଳ-ଶୋଣିତ-ଚର୍ଚ୍ଚିତ-ଦେହା,
ବିଶ୍ୱଭୂମଣ୍ଡଳ-କୃତବର-ସ୍ନେହା
ଜନନୀ, ଜନନୀ, ଜନନୀ ।।

କବିକୁଳମୌଳି ସୁନନ୍ଦନ-ବନ୍ଦ୍ୟା,
ଭୁବନବିଘୋଷିତ-କୀର୍ତ୍ତିଅନିନ୍ଦ୍ୟା,
ଧନ୍ୟେ, ପୁଣ୍ୟେ, ଚିରଶରଣ୍ୟେ
ଜନନୀ, ଜନନୀ, ଜନନୀ ।।

(କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର)

# ନବ ଉତ୍କଳର ନିର୍ମାତାଗଣ



ଉତ୍କଳଗୌରବ ମଧୁସୂଦନ ଦାସ







ଉତ୍କଳମଣି ଗୋପବନ୍ଧୁ ଦାସ

# ନବ ଉତ୍କଳର ନିର୍ମାତାଗଣ



ମହାରାଜା ଶ୍ରୀରାମଚନ୍ଦ୍ର ଭଂଜଦେଓ



ପଣ୍ଡିତ ନୀଳକଣ୍ଠ ଦାସ





ସ୍ୱଭାବକବି ଗଂଗାଧର ମେହେର



ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ

# ନବ ଉତ୍କଳର ନିର୍ମାତାଗଣ



ବ୍ୟାସକବି ଫକୀରମୋହନ ସେନାପତି







କବିବର ରାଧାନାଥ ରାୟ

# ନବ ଉତ୍କଳର ନିର୍ମାତାଗଣ



ଡକ୍ଟର ହରେକୃଷ୍ଣ ମହତାବ







ମହାନ ଜନନାୟକ ବିଜୁ ପଟ୍ଟନାୟକ





ମହାପ୍ରଭୁଙ୍କ ଘୋଷଯାତ୍ରା ନିମନ୍ତେ ରଥ ନିର୍ମାଣ କାର୍ଯ୍ୟ ତ୍ୱରାନ୍ୱିତ ।






କରୋନା ଭୂତାଣୁ ସମ୍ପର୍କରେ ସେବାୟତମାନଙ୍କ ପାଇଁ
ପ୍ରଶାସନ ଦ୍ୱାରା ଆୟୋଜିତ ସଚେତନତା ଶିବିର ।






କରୋନା ମହାମାରୀକୁ ପ୍ରତିହତ କରିବା ପାଇଁ ବ୍ୟାପକ ପ୍ରଶାସନିକ ପଦକ୍ଷେପ ।






ଓଡ଼ିଶା ସରକାରଙ୍କ ଦ୍ୱାରା ପରିଚାଳିତ କୋଭିଡ୍ ହସ୍ପିଟାଲ୍ ପରିଦର୍ଶନ ଅବସରରେ ଉନ୍ନୟନ କମିଶନର ତଥା ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ ସୁରେଶ ଚନ୍ଦ୍ର ମହାପାତ୍ର ଓ ୫'ଟି' ସଚିବ ଶ୍ରୀ ଭି.କେ. ପାଣ୍ଡିଆନ୍ ।

# ‘କରୋନା ଗତ ଏକ ଶତାବ୍ଦୀ ମଧ୍ୟରେ ମାନବ ସଭ୍ୟତାର ସବୁଠାରୁ ବଡ଼ ଶତ୍ରୁଭାବରେ ଦେଖାଦେଇଛି’

– ନବୀନ ପଟ୍ଟନାୟକ
ମୁଖ୍ୟମନ୍ତ୍ରୀ




ଆପଣମାନେ କରୋନାର ମୁକାବିଲା ପାଇଁ ରାଜ୍ୟ ସରକାରଙ୍କ ପଦକ୍ଷେପକୁ ଯେଭଳି ଭାବରେ ସହଯୋଗ ଓ ସମର୍ଥନ ଯୋଗାଇଛନ୍ତି, ସେଥିପାଇଁ ମୁଁ ଆପଣମାନଙ୍କୁ ଧନ୍ୟବାଦ ଜଣାଉଛି ।

ମୁଁ ଜାଣେ ଏଥିପାଇଁ ଆପଣମାନଙ୍କୁ, ଆମ ସମସ୍ତଙ୍କୁ ବହୁତ କଷ୍ଟ ସ୍ୱୀକାର କରିବାକୁ ପଡୁଛି । ଅନେକ ତ୍ୟାଗ କରିବାକୁ ପଡୁଛି, କିନ୍ତୁ ପରିସ୍ଥିତିର ମୁକାବିଲା କରିବା ପାଇଁ ଏହା ହିଁ ଏକମାତ୍ର ବାଟ ।

ଗତ ମାର୍ଚ୍ଚ ୧୫ ତାରିଖରେ ରାଜ୍ୟର ପ୍ରଥମ କରୋନା କେସ୍ ଆସିଲା । ତା’ ପରଠାରୁ ଆଜି ପର୍ଯ୍ୟନ୍ତ ୪୨ଟି କେସ୍ ଆସିଛି । ଏହି ସମୟ ମଧ୍ୟରେ ଆପଣମାନଙ୍କ ଶୃଙ୍ଖଳା ଓ ତ୍ୟାଗ ପରିସ୍ଥିତିର ମୁକାବିଲା ପାଇଁ ଆମକୁ ଶକ୍ତି ଦେଇଛି ।

> ଏହି କଠିନ ପରିସ୍ଥିତିରେ ଆମକୁ ମଣିଷ ଜୀବନ ଏବଂ ଅର୍ଥନୀତି ମଧ୍ୟରେ ନିଷ୍ପତ୍ତି ନେବାକୁ ହେଉଛି । ଏହି କଠିନ ପରିସ୍ଥିତିରେ ମଣିଷ ଜୀବନକୁ ହିଁ ଅଧିକ ଗୁରୁତ୍ୱ ଦେଇ ଆମେ ନିଷ୍ପତ୍ତି ନେଇଛୁ ।

ଏହି ସମୟ ମଧ୍ୟରେ ବିଶ୍ୱର ସବୁଠାରୁ ଶକ୍ତିଶାଳୀ ଦେଶ ଆମେରିକାରେ କରୋନା କେସ୍ ୩୦୦୦ରୁ ଆସି ୪ ଲକ୍ଷ୍ୟରେ ପହଞ୍ଚିଛି । ୯/୧୧ର ଆତଙ୍କବାଦୀ ଆକ୍ରମଣଠାରୁ ଆରମ୍ଭ କରି ବିଭିନ୍ନ ଯୁଦ୍ଧରେ ଆମେରିକାର ଯେତେ ଲୋକ ପ୍ରାଣବଳି ଦେଇଥିଲେ ତା’ଠାରୁ ଅଧିକ ଲୋକ କରୋନାର ଶିକାର ହୋଇଛନ୍ତି । ତଥାପି ଆମେରିକା ସମ୍ପୂର୍ଣ୍ଣଭାବରେ ଲକ୍‌ଡାଉନ୍ କରି ନାହିଁ ।

ଏହି କଠିନ ପରିସ୍ଥିତିରେ ଆମକୁ ମଣିଷ ଜୀବନ ଏବଂ ଅର୍ଥନୀତି ମଧ୍ୟରେ ନିଷ୍ପତ୍ତି ନେବାକୁ ହେଉଛି । ଏହି କଠିନ ପରିସ୍ଥିତିରେ ମଣିଷ ଜୀବନକୁ ହିଁ ଅଧିକ ଗୁରୁତ୍ୱ ଦେଇ ଆମେ ନିଷ୍ପତ୍ତି ନେଇଛୁ ।

ପରିସ୍ଥିତିକୁ ଦୃଷ୍ଟିରେ ରଖି ଆମେ ଲକ୍‌ଡାଉନ୍ ସମୟସୀମା ଏପ୍ରିଲ୍ ୩୦ ପର୍ଯ୍ୟନ୍ତ ବୃଦ୍ଧି କରିବାକୁ ନିଷ୍ପତ୍ତି କଲୁ । ରାଜ୍ୟ କ୍ୟାବିନେଟ୍ ଆଜି ଲକ୍‌ଡାଉନ୍ ସମୟ ସୀମା ଏପ୍ରିଲ୍ ୩୦କୁ ବୃଦ୍ଧି କରିବା ପାଇଁ କେନ୍ଦ୍ର ସରକାରଙ୍କୁ ସୁପାରିସ୍ କରିଛି । ସେହିପରି ଏପ୍ରିଲ୍ ୩୦ ପର୍ଯ୍ୟନ୍ତ ରେଳ ଓ ବିମାନ ସେବା ବନ୍ଦ ରଖିବା ପାଇଁ ଆମେ କେନ୍ଦ୍ର ସରକାରଙ୍କୁ ଅନୁରୋଧ କରିଛୁ ।

ଓଡ଼ିଶା ବାହାରେ ବିଭିନ୍ନ ରାଜ୍ୟରେ ରହିଯାଇଥିବା ଆମର ଶ୍ରମିକ ଭାଇଭଉଣୀମାନଙ୍କ ଯତ୍ନ ନେବା ପାଇଁ ଆମେ ସେସବୁ ରାଜ୍ୟ ସରକାରଙ୍କୁ ଅନୁରୋଧ କରିଛୁ । ଓଡ଼ିଶା ସରକାର ମଧ୍ୟ ଓଡ଼ିଶାରେ ରହିଯାଇଥିବା ଅନ୍ୟ ରାଜ୍ୟର ଶ୍ରମିକ ବନ୍ଧୁମାନଙ୍କର ଯତ୍ନ ନେଉଛନ୍ତି ।

ଏହି ଲକ୍‌ଡାଉନ ସମୟରେ କୃଷି କାର୍ଯ୍ୟ ଜାରି ରହିବ । ଗରିବ ଲୋକଙ୍କୁ ରୋଜଗାର ଦେବା ପାଇଁ ଏନ୍.ଆର୍.ଇ.ଜି.ଏସ୍. କାର୍ଯ୍ୟକ୍ରମ ଜାରି ରହିବ । କିନ୍ତୁ ଏସବୁ କାମରେ ସାମାଜିକ ଦୂରତ୍ୱକୁ କଡାକଡି ଭାବରେ ପାଳନ କରାଯିବ । ଲୋକଙ୍କ ଖାଦ୍ୟ ନିରାପତ୍ତା ଆମ ପାଇଁ ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ । ତେଣୁ ଲକ୍‌ଡାଉନ୍ ସମୟରେ ଯେପରି ମାଲ୍ ପରିବହନରେ ବାଧା ସୃଷ୍ଟି ନହୁଏ, ସେଥିପାଇଁ ସରକାର ଆବଶ୍ୟକ ପଦକ୍ଷେପ ନେଇଛନ୍ତି ।

ରାଜ୍ୟରେ କୋଭିଡ୍‌ର ଟେଷ୍ଟିଙ୍ଗ୍ ଓ ଚିକିତ୍ସା ପାଇଁ ରାଜ୍ୟ ସରକାର ସବୁ ପ୍ରକାର ପଦକ୍ଷେପ ନେଇଛନ୍ତି । ଖୁବ୍ ଶୀଘ୍ର ରାଜ୍ୟରେ ୧ ଲକ୍ଷ ରାପିଡ୍ ଟେଷ୍ଟିଙ୍ଗ୍ ସୁବିଧା ବିକାଶ କରିବା ପାଇଁ ଆମେ ପଦକ୍ଷେପ ନେଉଛୁ ।

ଯେଉଁ ଡାକ୍ତରମାନେ ମୋର ଅନୁରୋଧ ରକ୍ଷାକରି ଟେଲିମେଡିସିନ୍ ସେବା ଯୋଗାଇଦେବା ପାଇଁ ଆଗେଇ ଆସିଛନ୍ତି, ସେମାନଙ୍କୁ ମୁଁ ଧନ୍ୟବାଦ ଜଣାଉଛି ।

ମୁଁ ଘୋଷଣା କରୁଛି ରାଜ୍ୟର ସବୁ ସ୍କୁଲ କଲେଜ୍ ଜୁନ୍ ୧୭ ତାରିଖ ପର୍ଯ୍ୟନ୍ତ ବନ୍ଦ ରହିବ ।

କରୋନା ଗତ ଏକ ଶତାବ୍ଦୀ ମଧ୍ୟରେ ମାନବ ସଭ୍ୟତାର ସବୁଠାରୁ ବଡ ଶତ୍ରୁଭାବରେ ଦେଖାଦେଇଛି । ଜୀବନ ଯାତ୍ରା ଆଉ ଆଗଭଳି ରହିନାହିଁ । ଆମେ ସମସ୍ତେ ଏହା ବୁଝିବା ଦରକାର ଏବଂ ସାହସର ସହ ମିଳିତ ଭାବରେ ଏହାର ମୁକାବିଲା ପାଇଁ କାମ କରିବା ଦରକାର । ମହାପ୍ରଭୁଙ୍କ ଆଶୀର୍ବାଦ ଓ ଆମ ସମସ୍ତଙ୍କ ତ୍ୟାଗ ହିଁ ଏ କଠିନ ପରିସ୍ଥିତିରୁ ଆମକୁ ଶୀଘ୍ର ମୁକୁଳାଇ ପାରିବ ।



# ଶ୍ରୀଜଗନ୍ନାଥ ମନ୍ଦିର ଏବଂ ଶ୍ରୀଲିଙ୍ଗରାଜ ମନ୍ଦିର ଐତିହ୍ୟ ପ୍ରକଳ୍ପର ଅଗ୍ରଗତି ଉପରେ ମୁଖ୍ୟମନ୍ତ୍ରୀଙ୍କ ସମୀକ୍ଷା

## ମଇ ୨୯ ତାରିଖଠାରୁ କାର୍ଯ୍ୟ ପୁନଃ ଆରମ୍ଭ କରିବାକୁ ନିର୍ଦ୍ଦେଶ

ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଆଜି ମୁଖ୍ୟ ଶାସନ ସଚିବ ଓ ଅନ୍ୟ ବରିଷ୍ଠ ଅଧିକାରୀମାନଙ୍କ ସହିତ ପୁରୀ ଓ ଭୁବନେଶ୍ୱରର ଦୁଇଟି ଗୁରୁତ୍ୱପୂର୍ଣ୍ଣ ଐତିହ୍ୟ ପ୍ରକଳ୍ପ ଯଥା- ଶ୍ରୀଜଗନ୍ନାଥ ମନ୍ଦିର ଐତିହ୍ୟ ପ୍ରକଳ୍ପ ଏବଂ ଶ୍ରୀଲିଙ୍ଗରାଜ ମନ୍ଦିର ଐତିହ୍ୟ ପ୍ରକଳ୍ପର ଅଗ୍ରଗତି ସମ୍ପର୍କରେ ଭିଡିଓ କନଫରେନ୍ସିଂ ଜରିଆରେ ସମୀକ୍ଷା କରିଛନ୍ତି ।

ବୈଠକରେ ମୁଖ୍ୟମନ୍ତ୍ରୀ କହିଥିଲେ ଯେ ପୁରୀ ଓ ଭୁବନେଶ୍ୱରର ଏହି ଦୁଇଟି ପ୍ରକଳ୍ପ ଅନେକ ଦୃଷ୍ଟିରୁ ସ୍ୱତନ୍ତ୍ରଭାବେ ଗୁରୁତ୍ୱପୂର୍ଣ୍ଣ । ଲକ୍‌ଡାଉନ୍ ଯୋଗୁଁ ଏହି କାମ ଦୁଇ ମାସ ଧରି ବନ୍ଦ ରହିଥିଲା । ତେବେ ଏହି କାର୍ଯ୍ୟକୁ ମଇ ୨୯ ତାରିଖଠାରୁ ପୁନର୍ବାର ଆରମ୍ଭ କରିବାକୁ ମୁଖ୍ୟମନ୍ତ୍ରୀ ନିର୍ଦ୍ଦେଶ ଦେଇଛନ୍ତି । କରୋନା ସଂକ୍ରମଣକୁ ପ୍ରତିହତ କରିବା ପାଇଁ ସାମାଜିକ ଦୂରତ୍ୱ ଓ ଅନ୍ୟାନ୍ୟ ଗାଇଡ଼ଲାଇନଗୁଡ଼ିକୁ କଡ଼ାକଡ଼ି ଭାବରେ ପାଳନ କରିବା ପାଇଁ ମୁଖ୍ୟମନ୍ତ୍ରୀ ପରାମର୍ଶ ଦେଇଥିଲେ ।

ବୈଠକରୁ ଜଣାଯାଇଛି ଯେ ଶ୍ରୀସେତୁ, ଶ୍ରୀଜଗନ୍ନାଥ ବଲ୍ଲଭ ତୀର୍ଥଯାତ୍ରୀ କେନ୍ଦ୍ର, ମହୋଦଧି ମାର୍କେଟ୍ କମ୍ପ୍ଲେକ୍ସ ଏବଂ ମୂଷା ନଦୀର ସଂପ୍ରସାରଣ ଆଦି ଗୁରୁତ୍ୱପୂର୍ଣ୍ଣ ପ୍ରକଳ୍ପ ପାଇଁ ଜମି ଅଧିଗ୍ରହଣ କାର୍ଯ୍ୟ ଜାରି ରହିଛି । ଆଉ ଅଳ୍ପ ଜମିର ଅଧିଗ୍ରହଣ ବାକି ରହିଛି । ଏହା ଖୁବ୍‌ଶୀଘ୍ର, ପ୍ରାୟ ୨-୩ ମାସ ମଧ୍ୟରେ ସମ୍ପୂର୍ଣ୍ଣ ହେବ । ଏହାସହିତ ଶ୍ରୀଜଗନ୍ନାଥ ହେରିଟେଜ୍ କରିଡର, ବଡଦାଣ୍ଡ ଉନ୍ନତିକରଣ ପ୍ରକଳ୍ପ, ଶ୍ରୀଜଗନ୍ନାଥ ମନ୍ଦିର ପ୍ରଶାସନ ବିଲ୍‌ଡିଂର ପୁନର୍ବିକାଶ ପ୍ରକଳ୍ପ, ଜଗନ୍ନାଥ ସଂସ୍କୃତି କେନ୍ଦ୍ର ଆଦି ପ୍ରକଳ୍ପ ପାଇଁ ଡିଜାଇନ୍ ପ୍ରସ୍ତୁତ କରାଯାଉଛି ।

ସେହିପରି ଲିଙ୍ଗରାଜ ମନ୍ଦିର ପ୍ରକଳ୍ପର ମଧ୍ୟ ବିଭିନ୍ନ କାର୍ଯ୍ୟ ପାଇଁ ପ୍ରସ୍ତୁତି ଚାଲିଛି । ଜମି ଅଧିଗ୍ରହଣ କାର୍ଯ୍ୟ ଖୁବ୍‌ଶୀଘ୍ର ଶେଷ ହେବ ବୋଲି ବୈଠକରେ ସୂଚନା ଦିଆଯାଇଥିଲା । ମନ୍ଦିର ଓ ବିନ୍ଦୁସାଗର ମଧ୍ୟବର୍ତ୍ତୀ ଅଞ୍ଚଳର ବିକାଶ ପାଇଁ କାର୍ଯ୍ୟ ଆରମ୍ଭ କରାଯିବ । ଏଥିପାଇଁ ଯୋଜନା ଓ ଡିଜାଇନ୍ କାର୍ଯ୍ୟର ପ୍ରସ୍ତୁତି ଚାଲିଛି । ବିନ୍ଦୁସାଗର ଓ ଅନ୍ୟାନ୍ୟ ତୀର୍ଥ ପୁଷ୍କରିଣୀର ଜଳକୁ ନୂତନ ବୈଷୟିକ ଜ୍ଞାନ ସହାୟତାରେ ସ୍ୱଚ୍ଛ କରିବା ଓ ଏହାର ଗୁଣାତ୍ମକ ମାନ ବୃଦ୍ଧି ପାଇଁ ଭାରତ ସରକାରଙ୍କ ଇଣ୍ଡିଆନ୍ କେମିକାଲ୍ ଇନ୍‌ଷ୍ଟିଚ୍ୟୁଟ୍ ସହିତ ଖୁବ୍‌ଶୀଘ୍ର ଏକ ବୁଝାମଣାପତ୍ର ସ୍ୱାକ୍ଷର କରାଯିବ ବୋଲି ବୈଠକରୁ ଜଣାଯାଇଛି ।

ଏହି ବୈଠକରେ ମୁଖ୍ୟ ଶାସନ ସଚିବଙ୍କ ସହିତ ମୁଖ୍ୟମନ୍ତ୍ରୀଙ୍କ କାର୍ଯ୍ୟାଳୟର ମୁଖ୍ୟ ଉପଦେଷ୍ଟା, ଉନ୍ନୟନ କମିଶନର, ଶ୍ରୀଜଗନ୍ନାଥ ମନ୍ଦିର ମୁଖ୍ୟ ପ୍ରଶାସକ, ମୁଖ୍ୟମନ୍ତ୍ରୀଙ୍କ ସଚିବ (୫'ଟି'), ପୂର୍ତ୍ତ ସଚିବ, ପୁରୀ ଜିଲ୍ଲାପାଳ ପ୍ରମୁଖ ଯୋଗ ଦେଇଥିଲେ ।



# ‘ସରକାର ସମ୍ପୂର୍ଣ୍ଣ ପ୍ରସ୍ତୁତ ଆତଙ୍କିତ ହୁଅନ୍ତୁ ନାହିଁ, ସରକାରଙ୍କ ସହ ସହଯୋଗ କରନ୍ତୁ’

– ନବୀନ ପଟ୍ଟନାୟକ
ମୁଖ୍ୟମନ୍ତ୍ରୀ

ବଙ୍ଗୋପ ସାଗରରେ ସୃଷ୍ଟ ବାତ୍ୟା ‘ଅମ୍ଫାନ’ର ମୁକାବିଲା ନିମନ୍ତେ ରାଜ୍ୟ ସରକାରଙ୍କ ପ୍ରସ୍ତୁତି ସମ୍ପର୍କରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଆଜି ମୁଖ୍ୟ ଶାସନ ସଚିବ ଓ ବରିଷ୍ଠ ଅଧିକାରୀମାନଙ୍କ ସହିତ ସମୀକ୍ଷା କରିଛନ୍ତି ।




## ମୁଖ୍ୟମନ୍ତ୍ରୀଙ୍କ ସମୀକ୍ଷା

ମୁଖ୍ୟମନ୍ତ୍ରୀ ପ୍ରଭାବିତ ହେବାକୁ ଥିବା ୧୨ଟି ଜିଲ୍ଲାର ଜିଲ୍ଲାପାଳମାନଙ୍କ ସହିତ ମଧ୍ୟ ଆଲୋଚନା କରିଥିଲେ ।

ମୁଖ୍ୟମନ୍ତ୍ରୀ କହିଥିଲେ, ପ୍ରତିଟି ଜୀବନ ଆମ ପାଇଁ ମୂଲ୍ୟବାନ୍ । ଏହାକୁ ଦୃଷ୍ଟିରେ ରଖି ମୁକାବିଲା ଯୋଜନା ପ୍ରସ୍ତୁତ କରାଯିବା ଉପରେ ମୁଖ୍ୟମନ୍ତ୍ରୀ ଗୁରୁତ୍ୱ ଆରୋପ କରିଛନ୍ତି । ଓଡ଼ିଶାବାସୀ ମହାବାତ୍ୟାଠାରୁ ଆରମ୍ଭ କରି ଫନି, ତିତ୍‌ଲି, ବୁଲ୍‌ବୁଲ୍, ଫାଇଲିନ୍, ହୁଡ୍‌ହୁଡ୍ ଆଦି ଅନେକ ବାତ୍ୟାର ସଫଳତାର ସହ ମୁକାବିଲା କରିଆସିଛନ୍ତି । ତେଣୁ ଆତଙ୍କିତ ନ ହୋଇ ‘ଅମ୍ଫାନ’ର ମୁକାବିଲା କରିବା ପାଇଁ ସରକାରଙ୍କ ସହ ସହଯୋଗ କରିବାକୁ ମୁଖ୍ୟମନ୍ତ୍ରୀ ଜନସାଧାରଣଙ୍କୁ ଅନୁରୋଧ କରିଛନ୍ତି । ଏନ୍‌ଡିଆର୍‌ଏଫ୍, ଓଡିଆର୍‌ଏଏଫ୍ ଓ ଅଗ୍ନିଶମ ବାହିନୀକୁ ସଜାଗ ରଖିବା ସହ ବିପଦଶଙ୍କୁଳ ଅଞ୍ଚଳର ଜନସାଧାରଣଙ୍କୁ ସୁରକ୍ଷିତ ସ୍ଥାନକୁ ସ୍ଥାନାନ୍ତର କରିବା ପାଇଁ ଯୋଜନା ପ୍ରସ୍ତୁତି ସହ ବାତ୍ୟା ପରେ ପରେ ରାସ୍ତା, ବିଜୁଳି ଓ ପାନୀୟଜଳ ଯୋଗାଣ ସ୍ୱାଭାବିକ କରିବା ପାଇଁ ବିକଳ୍ପ ବ୍ୟବସ୍ଥା କରିବାକୁ ମୁଖ୍ୟମନ୍ତ୍ରୀ ନିର୍ଦ୍ଦେଶ ଦେଇଛନ୍ତି । ଏଥିପାଇଁ ପୂର୍ତ୍ତ, ଶକ୍ତି, ପଞ୍ଚାୟତିରାଜ ଓ ପାନୀୟ ଜଳଯୋଗାଣ ଏବଂ ନଗର ଉନ୍ନୟନ ବିଭାଗ ସମନ୍ୱୟ ରଖି କାମ କରିବାକୁ ମୁଖ୍ୟମନ୍ତ୍ରୀ ପରାମର୍ଶ ଦେଇଛନ୍ତି । ଏହି ସମୟରେ ମାଛ ଧରା କାର୍ଯ୍ୟକୁ ସମ୍ପୂର୍ଣ୍ଣ ଭାବରେ ବନ୍ଦ ରଖିବା ପାଇଁ ମୁଖ୍ୟମନ୍ତ୍ରୀ ପରାମର୍ଶ ଦେଇଥିଲେ ।

ରାଜ୍ୟ ପ୍ରଶାସନ ବର୍ତ୍ତମାନ କୋଭିଡ-୧୯ ରୋଗ ନିୟନ୍ତ୍ରଣରେ ସଫଳତାର ସହ କାମ କରିଚାଲିଥିବାରୁ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ତୃଣମୂଳ ସ୍ତରରୁ ଆରମ୍ଭ କରି ସର୍ବୋଚ୍ଚ ସ୍ତର ପର୍ଯ୍ୟନ୍ତ ଟିମ୍ ଓଡ଼ିଶାର ସମସ୍ତ ସଦସ୍ୟଙ୍କୁ ସେମାନଙ୍କ ନିଷ୍ଠା ଓ ଉତ୍ସର୍ଗୀକୃତ ମନୋଭାବ ପାଇଁ ଧନ୍ୟବାଦ ଜଣାଇଛନ୍ତି ।

ପ୍ରସ୍ତୁତି ସମ୍ପର୍କରେ ସୂଚନା ଦେଇ ମୁଖ୍ୟ ଶାସନ ସଚିବ ଶ୍ରୀ ଅସିତ ତ୍ରିପାଠୀ କହିଥିଲେ ଯେ 'ଅମ୍ଫାନ'ର ମୁକାବିଲା ପାଇଁ କେନ୍ଦ୍ର କ୍ୟାବିନେଟ୍ ସଚିବଙ୍କ ସହିତ ତାଙ୍କର ଆଜି ଆଲୋଚନା ହୋଇଛି । ରାଜ୍ୟ ସରକାରଙ୍କ ସମସ୍ତ ବିଭାଗ 'ଅମ୍ଫାନ'ର ମୁକାବିଲା ପାଇଁ ସମ୍ପୂର୍ଣ୍ଣ ପ୍ରସ୍ତୁତ ଅଛନ୍ତି ।



ସେହିପରି ଏହି ବାତ୍ୟା ଯୋଗୁଁ ଅଧିକ ପ୍ରଭାବିତ ହେବାକୁ ଥିବା ୪ଟି ଜିଲ୍ଲାରେ ଏକ ଲକ୍ଷ ହେକ୍ଟର ରବି ଫସଲ ଓ ପନିପରିବା ପ୍ରଭାବିତ ହେବାର ଆଶଙ୍କା ଦେଖାଦେଇଛି । ତେଣୁ ଚାଷୀମାନଙ୍କୁ ଏ ସମ୍ପର୍କରେ ବ୍ୟାପକ ଭାବରେ ସଚେତନ କରାଯିବା ଉପରେ ବୈଠକରେ ଗୁରୁତ୍ୱ ଆରୋପ କରାଯାଇଥିଲା ।

ବାତ୍ୟା 'ଅମ୍ଫାନ'ର ମୁକାବିଲା ପାଇଁ ୧୧ ଲକ୍ଷ ଲୋକ ରହିପାରିବା ଭଳି ୫୬୭ ବାତ୍ୟା ଅସ୍ଥାୟୀସ୍ଥଳ ଏବଂ ୭୦୦୦ ପକ୍କା ଘର ପ୍ରସ୍ତୁତ ରଖାଯାଇଛି । ଏହାସହିତ ୩ଟି ଏନ୍‌ଡିଆର୍‌ଏଫ୍ ଓ ୧୨ଟି ଓଡିଆର୍‌ଏଏଫ୍ ଟିମ୍ ଏବଂ ୩୫୫ ୟୁନିଟ୍ ଅଗ୍ନିଶମ ସେବା ବାହିନୀ ମୁତୟନ କରାଯାଇଛି ବୋଲି ସ୍ୱତନ୍ତ୍ର ରିଲିଫ କମିଶନର ଶ୍ରୀ ପ୍ରଦୀପ ଜେନା ସୂଚନା ଦେଇଥିଲେ ।

ଭାରତୀୟ ପାଣିପାଗ ବିଭାଗ ପକ୍ଷରୁ ବୈଠକରେ ସୂଚନା ଦିଆଯାଇଥିଲା ଯେ 'ଅମ୍ଫାନ' ପ୍ରଭାବରେ ମଇ ୧୮ରୁ ଗୋଟିଏ ଦୁଇଟି ସ୍ଥାନରେ ବର୍ଷା ହେବା ସହିତ ୧୯ ଓ ୨୦ ଦୁଇ ଦିନ ଧରି ଉପକୂଳ ଓଡ଼ିଶାରେ ପ୍ରବଳ ବର୍ଷାର ଆଶଙ୍କା ରହିଛି । ଏହାସହିତ ପବନର ବେଗ ଘଣ୍ଟାକୁ ୯୫ କି.ମି. ଏବଂ ସ୍ଥଳବିଶେଷରେ ଏହାଠାରୁ ଅଧିକ ହୋଇପାରେ ବୋଲି ସୂଚନା ଦିଆଯାଇଥିଲା । ଏହି ବାତ୍ୟାରେ ରାଜ୍ୟର ୧୨ଟି ଜିଲ୍ଲା ପ୍ରଭାବିତ ହେବାର ଆଶଙ୍କା ରହିଛି ।

ଅନ୍ୟାନ୍ୟ ବିଷୟମାନଙ୍କ ମଧ୍ୟରେ ଡାକ୍ତରଖାନା ସହିତ ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ପ୍ରତିଷ୍ଠାନମାନଙ୍କରେ ବିଦ୍ୟୁତ୍ ସରବରାହ ନିରନ୍ତର ଜାରି ରଖାଯିବା, ସହରାଞ୍ଚଳମାନଙ୍କରେ ଜଳ ଆବଦ୍ଧ ଭଳି ସମସ୍ୟାର ଦୂରୀକରଣ ଆଦି ବିଷୟରେ ଆଲୋଚନା କରାଯାଇଥିଲା ।

ଏହି ଭିଡିଓ କନ୍‌ଫରେନ୍‌ସିଂରେ ମୁଖ୍ୟ ଶାସନ ସଚିବ, ମୁଖ୍ୟମନ୍ତ୍ରୀଙ୍କ କାର୍ଯ୍ୟାଳୟର ମୁଖ୍ୟ ପରାମର୍ଶଦାତା, ଉନ୍ନୟନ କମିଶନର, ପୋଲିସ ମହାନିର୍ଦ୍ଦେଶକ, ସ୍ୱତନ୍ତ୍ର ରିଲିଫ କମିଶନରଙ୍କ ସମେତ ବିଭିନ୍ନ ବିଭାଗର ପ୍ରମୁଖ ସଚିବ, ଶାସନ ସଚିବ ଏବଂ ପ୍ରଭାବିତ ଜିଲ୍ଲାମାନଙ୍କର ଜିଲ୍ଲାପାଳମାନେ ଉପସ୍ଥିତ ଥିଲେ ।



# ଓଡ଼ିଆ ଜାତୀୟତାର ନବ ଜାଗରଣ ଓ ଉତ୍କଳ ସମ୍ମିଳନୀ

ଡକ୍ଟର ଶରତ କୁମାର ବିଶ୍ୱାଳ

୧୯୩୬ ମସିହା ଅପ୍ରେଲ ମାସ ଏକ ତାରିଖ ଦିନ ଓଡିଶା ଏକ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ ହେଲା । ଏକ ଖଣ୍ଡିତ ଓଡିଶା ପ୍ରଦେଶ ଦୀର୍ଘଦିନର ଆନ୍ଦୋଳନ ଫଳରେ ଭାରତର ମାନଚିତ୍ରରେ ଓଡିଆମାନଙ୍କର ଏକ ସ୍ୱତନ୍ତ୍ର ପରିଚୟ ଓ ସ୍ୱୀକୃତି ସମ୍ଭବ ହେଲା । ଇଂରେଜ ଐତିହାସିକ ଏ.ଷ୍ଟାର୍ଲିଙ୍ଗ ୧୮୨୨ ମସିହାରେ "An Account of Orissa proper or Cuttack" ପୁସ୍ତକରେ ଲେଖିଥିଲେ 'ଓଡିଶାର ସୀମା ହୁଗୁଳିର ଉପରିଭାଗ ତ୍ରିବେଣୀଘାଟଠାରୁ ବିସେନପୁର ମଧ୍ୟଦେଇ ସମୁଦ୍ର ଓ ହୁଗୁଳିନଦୀର ପୂର୍ବଘାଟ ଯାଏ ଓ ଦକ୍ଷିଣରେ ଗୋଦାବରୀ, ପଶ୍ଚିମରେ ସିଂହଭୂମିଠାରୁ ସୋନପୁର , ଗାଙ୍ଗପୁର ଯାଏଁ ବ୍ୟାପୀ ରହିଥିଲା ।' ୧୫୬୮ ମସିହାରେ ଯାଜପୁର ନିକଟସ୍ଥ (ବର୍ତ୍ତମାନ ଭଦ୍ରକ ଜିଲ୍ଲା) ଗୋହିରାଟିକିରି ଯୁଦ୍ଧ କ୍ଷେତ୍ରରେ ଓଡିଶାର ରାଜା ମୁକୁନ୍ଦଦେବ ନିହତ ହେଲେ । ଓଡିଶାର ସ୍ୱାଧୀନତା ରବି ଚିରଦିନ ପାଇଁ ଅସ୍ତମିତ ହୋଇଗଲା । ଆଫଗାନ , ମୋଗଲ ଓ ମରହଟ୍ଟା ଶାସନ ଓଡିଶାରେ ୨୩୫ ବର୍ଷ ଧରି ଚାଲିଲା । ସେମାନଙ୍କର ସ୍ୱାର୍ଥ ପାଇଁ ଓଡିଶାକୁ ଭାଗ ଭାଗ କରି ପଡୋଶୀ ରାଜ୍ୟମାନଙ୍କରେ ମିଶାଇ ଦେଲେ । ୧୮୦୩ ମସିହାରେ ଇଂରେଜମାନେ ଓଡିଶା ଅଧିକାର କଲେ । କଟକ, ପୁରୀ ଓ ବାଲେଶ୍ୱର ଅଞ୍ଚଳକୁ ଓଡିଶା ଡିଭିଜନ ନାମରେ ବଙ୍ଗ ପ୍ରଦେଶ ସହିତ ସାମିଲ କରିଦେଲେ । ବ୍ରିଟିଶ ଶାସନରେ ଓଡିଶା ଖଣ୍ଡ ବିଖଣ୍ଡିତ ହୋଇ ବଙ୍ଗଳା, ବିହାର, ମଧ୍ୟପ୍ରଦେଶ ଓ ମାଡ୍ରାସ ପ୍ରଦେଶ ଅଧୀନରେ ରହିଲା । ବ୍ରିଟିଶ-ଭାରତ ମାନଚିତ୍ରରେ ଓଡିଶା ପ୍ରଦେଶର କୌଣସି ସ୍ୱତନ୍ତ୍ର ପରିଚ଼ୟ ରହିଲା ନାହିଁ । ଇଂରେଜମାନେ ଓଡିଶା ଅଧିକାର କରିବା ପରେ ପରେ ୧୮୦୫ ମସିହାରେ ଖୋର୍ଦ୍ଧାରାଜାଙ୍କ ମନ୍ତ୍ରୀ ଜୟୀ ରାଜଗୁରୁଙ୍କ ନେତୃତ୍ୱରେ ବିଦ୍ରୋହ ଓ ୧୮୧୭ ମସିହାରେ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ପାଇକ ବିଦ୍ରୋହ ଇଂରେଜ ଶାସନକୁ ଦୋହଲାଇ ଦେଇଥିଲା । ଫଳରେ ଇଂରେଜ ଶାସକମାନେ ଓଡିଶାର ବିକାଶ ପ୍ରତି ବିଶେଷ ଧ୍ୟାନ ଦେଲେନାହିଁ । ଓଡିଆମାନଙ୍କ ପ୍ରତି ଇଂରେଜ ସରକାରଙ୍କ ଅବହେଳା ଓ ପଡୋଶୀ ରାଜ୍ୟମାନଙ୍କର ଚ଼କ୍ରାନ୍ତ ଯୋଗୁଁ ଓଡିଆମାନେ ଏକ ଦୁର୍ବଳ ଓ ଅଶିକ୍ଷିତ ଜାତିରେ ପରିଣତ ହେଲେ । ଶିକ୍ଷା, ସ୍ୱାସ୍ଥ୍ୟ ଓ ଗମନାଗମନର ସୁବିଧାରୁ ବଂଚ଼ିତ ହୋଇ ଓଡିଶାବାସୀ ଅନ୍ଧକାରର ଗହ୍ୱରକୁ ଠେଲି ହୋଇଗଲେ । ଶାସନତାନ୍ତ୍ରିକ ବିମୁଖତା କାରଣରୁ ୧୮୬୬ ମସିହାରେ ଓଡିଶା ନଅଙ୍କ ଦୁର୍ଭିକ୍ଷର କବଳିତ ହେଲା । ଲକ୍ଷ ଲକ୍ଷ ଓଡିଶାବାସୀ ଖାଦ୍ୟ ବିନା ପୋକ ମାଛି ପରି ମୃତ୍ୟୁବରଣ କଲେ । ଓଡିଆମାନଙ୍କର ମେରୁଦଣ୍ଡ ଭାଙ୍ଗିଗଲା । ହୀନମନ୍ୟତା ଓ ଆତ୍ମ ବିସ୍ମୃତିର ଘନ ଅନ୍ଧକାର ମଧ୍ୟରେ ଓଡିଆ ଜାତି ତା'ର ସତ୍ତା ହଜାଇବାକୁ ବସିଲା ।

ମାତୃଭୂମି, ମାତୃଭାଷା, ସଂସ୍କୃତି ଓ ପରମ୍ପରା ହେଉଛି ଜାତୀୟ ଜୀବନର ଆଧାରଶିଳା । ଗୋଟିଏ ଜାତିର ଆତ୍ମ ପରିଚ଼ୟ ଓ ସ୍ୱାଭିମାନର ମୂଳଭିତ୍ତି, ଏହାକୁ ଭୁଲି କୌଣସି ଜାତି ପୃଥିବୀରେ ସମୃଦ୍ଧ ହୋଇ ପାରିନାହିଁ । ଇଂରେଜ ଶାସନ କାଳରେ ଓଡିଆ ଜାତି ଏ କ୍ଷେତ୍ରରେ ଗୁରୁତର ସଙ୍କଟର ସମ୍ମୁଖୀନ ହୋଇଥିଲା । ଓଡିଆମାନଙ୍କ

ମଧ୍ୟରେ ଜାତୀୟତା ନବଜାଗରଣର ଉନ୍ମାଦନା ଖେଳାଇ ହଜି ଯାଇଥିବା ଅତୀତର ସ୍ୱାଭିମାନକୁ ଫେରାଇ ଆଣିବା ପାଇଁ ଊନବିଂଶ ଶତାବ୍ଦୀର ସତୁରୀ ଦଶକରେ ପ୍ରଥମେ ଭାଷା ସୁରକ୍ଷା ଆନ୍ଦୋଳନ ମାଧ୍ୟମରେ ଉଦ୍ୟମ ଆରମ୍ଭ କରାଯାଇଥିଲା । ଓଡିଆ ଭାଷାକୁ ବିଲୋପ କରି ବଙ୍ଗଳା, ହିନ୍ଦୀ ଓ ତେଲୁଗୁ ଭାଷା ଓଡିଶାର ସ୍କୁଲମାନଙ୍କରେ ପ୍ରଚଳନ କରିବା ପାଇଁ ହୀନ ଚକ୍ରାନ୍ତ ଆରମ୍ଭ ହୋଇଗଲା । ପଡୋଶୀ ରାଜ୍ୟର ବ୍ୟକ୍ତିମାନେ ଏସବୁ କାର୍ଯ୍ୟର ସୂତ୍ରଧର ହେଲେ । ରାଜେନ୍ଦ୍ର ଲାଲ ମିତ୍ର, କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ଓ ଶିବଦାସ ଭଟ୍ଟାଚାର୍ଯ୍ୟ ପ୍ରଭୃତି ଓଡିଆ ଭାଷା ବିରୋଧରେ ଅପପ୍ରଚାର ଚଳାଇଲେ । ଓଡିଆ ଗୋଟିଏ ସ୍ୱତନ୍ତ୍ର ଭାଷା ନୁହେଁ ବୋଲି ମତ ଦେଲେ । ଏହା ବିରୁଦ୍ଧରେ ଓଡିଶାରେ ଜନ ଜାଗରଣ ସୃଷ୍ଟି ହେଲା । ଓଡିଶାର ଆଦିନେତା ବିଚିତ୍ରାନନ୍ଦ ଦାସ, ଗୌରୀ ଶଙ୍କର ରାୟ, ଫକୀର ମୋହନ ସେନାପତି, ରାଧାନାଥ ରାୟ, ବିଚ୍ଛନ୍ଦ ଚରଣ ପଟ୍ଟନାୟକ, ରାମଶଙ୍କର ରାୟ, ଜଗମୋହନ ଲାଲା ଓ ଗୋବିନ୍ଦ ରଥ ପ୍ରଭୃତି ସାହିତ୍ୟିକ ଓ ନେତାମାନେ ଏହାର ଦୃଢ ପ୍ରତିବାଦ କଲେ । ୧୮୬୬ ମସିହା ଅଗଷ୍ଟ ମାସରେ ଗୌରୀ ଶଙ୍କର ରାୟ 'ଉତ୍କଳ ଦୀପିକା' ପତ୍ରିକା ପ୍ରକାଶ କଲେ । ଏହି ପ୍ରତ୍ରିକା ଓଡିଆ ଭାଷା ଆନ୍ଦୋଳନ ଓ ଓଡିଆଭାଷୀ ଅଞ୍ଚଳର ଏକତ୍ରିକରଣ ପାଇଁ ପ୍ରଶାସନର ଦୃଷ୍ଟି ଆକର୍ଷଣ କଲା । ୧୮୬୮ ମସିହାରେ ଫକୀର ମୋହନ ଓ ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ ଓଡିଆ ଭାଷାର ସମୃଦ୍ଧି ପାଇଁ ବାଲେଶ୍ୱରରୁ 'ସମ୍ବାଦ ବାହିକା' ପ୍ରକାଶ କରିଥିଲେ, ଯାହାକି ପୂର୍ବରୁ 'ବୋଧ ଦାୟିନୀ' ନାମରେ ପ୍ରକାଶ ପାଉଥିଲା । ବୈକୁଣ୍ଠ ନାଥ ଦେଙ୍କ ଉତ୍କଳ ଦର୍ପଣ (୧୮୭୩), ଗୋବିନ୍ଦ ରଥଙ୍କ ସହାୟତାରେ ଆଚାର୍ଯ୍ୟ ପ୍ୟାରୀମୋହନଙ୍କ ପ୍ରକାଶିତ 'ଉତ୍କଳ ପୁତ୍ର', ବାମଣ୍ଡାର ମହାରାଜା ସୁଢଳ ଦେବଙ୍କ ଆର୍ଥିକ ସହାୟତାରେ ଓ ନୀଳମଣି ବିଦ୍ୟାରତ୍ନଙ୍କ ସଂପାଦନାରେ ପ୍ରକାଶିତ 'ସମ୍ବଲପୁର ହିତୈଷିଣୀ' ଏବଂ ବିଶ୍ୱନାଥ କରଙ୍କ ସମ୍ପାଦିତ 'ଉତ୍କଳ ସାହିତ୍ୟ(୧୮୯୭) ଓଡିଆ ଭାଷା ସାହିତ୍ୟକୁ ସମୃଦ୍ଧ ଓ ସୁରକ୍ଷା ଦେବାରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ । ଏତଦ୍‌ବ୍ୟତୀତ 'ହିତ ବାଦିନୀ', ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କ ପୃଷ୍ଠପୋଷକତାରେ ପ୍ରକାଶିତ 'ଉତ୍କଳ ପ୍ରଭା' , 'ଉତ୍କଳମଧୁପ', 'ସଂସ୍କାରକ', 'ପ୍ରଜାବନ୍ଧୁ', 'ଶିକ୍ଷାବନ୍ଧୁ, 'ଉତ୍କଳ ବନ୍ଧୁ' ଓ 'ଗଞ୍ଜାମ ଓଡିଆ' ପ୍ରମୁଖ ପତ୍ରପତ୍ରିକା ଓଡିଆ ଭାଷା ଓ ସାହିତ୍ୟର ପ୍ରସାର କରାଇବା ଦିଗରେ ଅଗ୍ରଭାଗରେ ଥିଲେ । ବ୍ରଜସୁନ୍ଦର ଦାସଙ୍କ 'ମୁକୁର' ଶଶୀଭୂଷଣ ରଥଙ୍କ 'ଆଶା', ଗୋପବନ୍ଧୁ ଦାସଙ୍କ 'ସତ୍ୟବାଦୀ' ଓ 'ସମାଜ' ଏବଂ ହରେକୃଷ୍ଣ ମହତାବଙ୍କ 'ପ୍ରଜାତନ୍ତ୍ର' ପ୍ରଭୃତି ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ, ଓଡିଆ ଭାଷା ଓ ସାହିତ୍ୟର ପ୍ରଚାର ପ୍ରସାର ପାଇଁ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ସ୍ୱର ଉତ୍ତୋଳନ କରିଥିଲେ ।

ଓଡିଆ ଭାଷାଭାଷୀ ଅଞ୍ଚଳର ଏକତ୍ରିକରଣ ପାଇଁ ବିଚିତ୍ରାନନ୍ଦ ଦାସ ଓ ବାଲେଶ୍ୱରର ରାଜା ବୈକୁଣ୍ଠ ନାଥ ଦେ ସର୍ବପ୍ରଥମେ ବେସରକାରୀ ଭାବରେ ବଙ୍ଗଳାର ଛୋଟଲାଟ୍ ସାର୍ ରିଚାର୍ଡ ଟେମ୍ପଲଙ୍କୁ ବାଲେଶ୍ୱରଠାରେ ୧୮୭୫ ଫେବୃଆରୀ ମାସରେ ସ୍ମାରକପତ୍ର ଦେଇଥିଲେ । ଏଥିରେ ପ୍ରତି ସବ୍‌ଡିଭିଜନ ସଦରମହକୁମାରେ ଉଚ୍ଚ ବିଦ୍ୟାଳୟ ପ୍ରତିଷ୍ଠା ଓ ଓଡିଶାରେ ରେଳପଥର ପ୍ରସାର ପାଇଁ ଦାବୀ କରିଥିଲେ । ଦକ୍ଷିଣ ଓଡିଶାରେ ଶ୍ରୀ ଉଇଲିୟମ ମହାନ୍ତିଙ୍କ ଅଧ୍ୟକ୍ଷତାରେ ଗଞ୍ଜାମ ଓଡିଆଙ୍କ ଦୁଃଖ ଦୁର୍ଦ୍ଦଶା ମୋଚନ ପାଇଁ ସରକାରଙ୍କ ଦୃଷ୍ଟି ଆକର୍ଷଣ କରାଯାଇ ଆନ୍ଦୋଳନ ଚାଲିଲା । ବିଶେଷ କରି ବ୍ରହ୍ମପୁରର 'ଉତ୍କଳ ହିତବାଦିନୀ ସଭା' ଏହି ଆନ୍ଦୋଳନ ଅଗ୍ରଭାଗରେ ଥିଲା ।

୧୮୮୧ ମସିହା ସେପ୍ଟେମ୍ବର ମାସରେ ମଧୁବାବୁ ଓଡିଶାକୁ ଫେରି ଆସିଲେ । ୧୮୮୨ ମସିହାରେ ମଧୁବାବୁ 'ଉତ୍କଳ ସଭା'ର ସଭାପତି ଦାୟିତ୍ୱ ଗ୍ରହଣ କଲେ । ଗୌରୀଶଙ୍କର ରାୟ ଓ ମଧୁବାବୁ ଓଡିଆ ଭାଷାଭାଷୀ ଅଞ୍ଚଳର ମିଶ୍ରଣ, ଓଡିଆ ଭାଷାର ସୁରକ୍ଷା ସହ କୃଷି ଓ ଶିଳ୍ପର ଉନ୍ନତି ପାଇଁ 'ଉତ୍କଳ ସଭା' ମାଧ୍ୟମରେ ଦାବୀ କଲେ । ଏତଦ୍‌ବ୍ୟତୀତ ଉତ୍କଳ ସଭା ମ୍ୟୁନିସିପାଲିଟି, ଜିଲ୍ଲାବୋର୍ଡ ଗଠନ ଓ ପରିଚାଳନା, କଟକରୁ ଚାନ୍ଦବାଲି ଷ୍ଟିମର ଚଳାଇବା, କେନାଲ ଖନନ ଓ ଜଳ ଯୋଗାଣ

ପାଇଁ ସରକାରଙ୍କୁ ସ୍ମାରକପତ୍ର ପ୍ରଦାନ କଲା । ଉତ୍କଳ ସଭା ଜରିଆରେ ଓଡ଼ିଆମାନଙ୍କ ମନରେ ଜାତୀୟତା ଭାବ ଜାଗ୍ରତ କରିବା ପାଇଁ ମଧୁବାବୁ ମାନସିକ ପ୍ରସ୍ତୁତି ଚଳାଇଲେ । ଓଡ଼ିଆ ଭାଷାଭାଷୀ ଅଞ୍ଚଳ ମିଶ୍ରଣ ପାଇଁ ମଧୁବାବୁ ଉତ୍କଳ ସଭା ତରଫରୁ ବଙ୍ଗର ଲାଟ ଥମ୍ପସନ୍‌ଙ୍କୁ (୧୮୮୫), ବେଲା ସାହେବଙ୍କୁ (୧୮୮୮) ଓ ଜନ୍ ଉଡ୍ ବର୍ଣ୍ଣଙ୍କୁ (୧୮୯୮) ଦାବୀପତ୍ର ପ୍ରଦାନ କରିଥିଲେ । ୧୮୮୭ ମସିହାରେ ଜାତୀୟ କଂଗ୍ରେସର ତୃତୀୟ ଅଧିବେଶନ ମାନ୍ଦ୍ରାଜରେ ଅନୁଷ୍ଠିତ ହୋଇଥିଲା । ମଧୁବାବୁ ଓ ଗୌରୀଶଙ୍କର ରାୟ ସାତଦିନ ଜାହାଜରେ ଜଳଯାତ୍ରା କରି 'ଉତ୍କଳ ସଭା'ର ପ୍ରତିନିଧି ଭାବେ ମାନ୍ଦ୍ରାଜର କଂଗ୍ରେସ ଅଧିବେଶନରେ ଯୋଗଦେଇଥିଲେ ।

୧୮୯୬ ମସିହା ବେଳକୁ ମଧୁବାବୁ ନିର୍ବାଚିତ ହୋଇ ବଙ୍ଗ ପ୍ରଦେଶର ବ୍ୟବସ୍ଥା ସଭାର ସଭ୍ୟ ହୋଇଥିଲେ । ତାଙ୍କର କ୍ରମାଗତ ଉଦ୍ୟମ ଫଳରେ କଲିକତାରୁ କଟକ ପର୍ଯ୍ୟନ୍ତ ରେଳପଥର କାର୍ଯ୍ୟ ଶୁଭାରମ୍ଭ ହୋଇଥିଲା । ୧୮୯୭ ମସିହା ଅପ୍ରେଲ ୨୬ ତାରିଖରେ ମଧୁବାବୁ ଇଂଲଣ୍ଡ ଯାତ୍ରା କଲେ । ଇଂଲଣ୍ଡରେ ଭାରତ ଶାସନ ସଚିବ ଜର୍ଜ ହାମିଲଟନଙ୍କୁ ସାକ୍ଷାତ କରି ମଧୁବାବୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରିକରଣ ଓ ହିନ୍ଦୀଭାଷା ପରିବର୍ତ୍ତେ ଓଡ଼ିଆ ଭାଷାର ପ୍ରଚଳନ ପାଇଁ ଦାବୀ କରିଥିଲେ । ଇଂଲଣ୍ଡରେ ବିଭିନ୍ନ ନେତାଙ୍କୁ ସାକ୍ଷାତ୍ କରି ଓଡ଼ିଶା ବିଷୟରେ ଆଲୋଚନା କରିଥିଲେ । ୧୮୯୯ ମସିହା ଜାନୁଆରୀ ମାସ ୫ ତାରିଖରେ ଲର୍ଡ କର୍ଜନ ଭାରତର ବଡ଼ଲାଟ୍ ହୋଇ ଆସିଲେ । ମଧୁବାବୁ କର୍ଜନଙ୍କ ନିକଟକୁ ଏକ ଦାବୀପତ୍ର ପଠାଇ ଓଡ଼ିଶା ଓ ଓଡ଼ିଆମାନଙ୍କର ଦୁର୍ଦ୍ଦଶା ବିଷୟରେ ଜଣାଇଲେ । ଲର୍ଡ କର୍ଜନ ମଧୁବାବୁଙ୍କଠାରୁ ଦାବୀପତ୍ର ପାଇଲା ପରେ ତାଙ୍କୁ ଓଡ଼ିଶା ବିଷୟରେ ଆଲୋଚନା କରିବା ପାଇଁ ସିମ୍‌ଲା ଡକାଇଲେ । କର୍ଜନଙ୍କ ବ୍ୟକ୍ତିଗତ ସଚିବଙ୍କଠାରୁ ଚିଠି ପାଇଲା ପରେ ମଧୁବାବୁ ୧୯୦୦ ମସିହା ଅକ୍ଟୋବର ମାସ ତୃତୀୟ ସପ୍ତାହରେ ସିମ୍‌ଲା ଯାଇ ଲର୍ଡ କର୍ଜନଙ୍କୁ ସାକ୍ଷାତ୍ କଲେ । ଇଂରେଜ ଶାସନରେ ଉତ୍କଳର ଦୟନୀୟ ଅବସ୍ଥା ଓ ଓଡ଼ିଆମାନଙ୍କର ଦୁର୍ଦ୍ଦଶା ବିଷୟରେ ଲର୍ଡ କର୍ଜନଙ୍କୁ ଅବଗତ କଲେ । ଲର୍ଡ କର୍ଜନଙ୍କୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ମିଶ୍ରଣ, ସମ୍ବଲପୁରରେ ଓଡ଼ିଆ ଭାଷାର ପ୍ରଚଳନ ଓ କଳା ଭାସ୍କର୍ଯ୍ୟର ସଂରକ୍ଷଣ ପାଇଁ ମଧୁବାବୁ ପ୍ରାର୍ଥନା କରିଥିଲେ । ପୁରୀ ଓ ଭୁବନେଶ୍ୱର ବୁଲି ଦେଖିବାକୁ ନିମନ୍ତ୍ରଣ କରିଥିଲେ । ମଧୁବାବୁଙ୍କ ନିମନ୍ତ୍ରଣ ରକ୍ଷାକରି ଭାରତର ବଡ଼ଲାଟ୍ କର୍ଜନ ୧୯୦୦ ମସିହା ଡିସେମ୍ବର ମାସ ୧୬ ତାରିଖରେ ଓଡ଼ିଶାକୁ ଆସିଥିଲେ । ଓଡ଼ିଆମାନଙ୍କ ଦୟନୀୟ ଅବସ୍ଥା ସ୍ୱଚକ୍ଷୁରେ ଦେଖିଲା ପରେ ଲର୍ଡ କର୍ଜନଙ୍କ ହୃଦୟ ବିଚଳିତ ହେଲା । ୧୯୦୩ ମସିହା ଜାନୁଆରୀ ମାସ ପହିଲା ଦିନ ତାଙ୍କ ଆଦେଶ ବଳରେ ସମଗ୍ର ସମ୍ବଲପୁର ଜିଲ୍ଲାରେ ଓଡ଼ିଆ ଭାଷା ପୁନଃ ପ୍ରଚଳନ ହେଲା । ଓଡ଼ିଆମାନଙ୍କ ଦୁଃଖ ଦୁର୍ଦ୍ଦଶା ଦେଖିଯାଇଥିବା ବଡ଼ଲାଟ୍ ଲର୍ଡ କର୍ଜନ ଉତ୍କଳ ସମ୍ମିଳନୀ ପୂର୍ବରୁ ୧୯୦୩ ମସିହା ଡିସେମ୍ବର ମାସ ୩ ତାରିଖରେ ସମଗ୍ର ଓଡ଼ିଆ ଭାଷାଭାଷୀ ଅଂଚଳର ପୁନଃ ମିଶ୍ରଣ ପାଇଁ 'ରିସିଲେ ସର୍କୁଲାର' ପ୍ରସାରିତ କଲେ । ସେ ୧୯୦୫ ମସିହା ଅକ୍ଟୋବର ୧୬ ତାରିଖରେ ବଙ୍ଗଭଙ୍ଗ କଲେ । ଓଡ଼ିଶା ଡିଭିଜନ ସହ ସମ୍ବଲପୁର, ପାଟଣା, କଳାହାଣ୍ଡି, ବାମଣ୍ଡା, ସୋନପୁର ଓ ରେଢାଖୋଲ ମଧ୍ୟପ୍ରଦେଶରୁ ଏବଂ ଗାଙ୍ଗପୁର ଓ ବଣେଇ ଛୋଟନାଗପୁରରୁ ଆସି ମିଶିଗଲା କିନ୍ତୁ ଓଡ଼ିଶା ଡିଭିଜନ ପଶ୍ଚିମ ବଙ୍ଗ ସହ ମିଶି ରହିଲା । ମାଦ୍ରାସ ସରକାରଙ୍କ ଅନିଚ୍ଛା ଯୋଗୁଁ ଦକ୍ଷିଣାଞ୍ଚଳ ଓଡ଼ିଶା ଡିଭିଜନ ସହ ମିଶି ପାରିଲା ନାହିଁ ।

ଖଲ୍ଲିକୋଟ ରାଜା ହରିହର ମର୍ଦ୍ଦରାଜ ୧୯୦୨ ମସିହା ଅପ୍ରେଲମାସ ୧୧ ଓ ୧୨ ତାରିଖରେ ଚିଲିକା କୂଳସ୍ଥ ରମ୍ଭା ରାଜ ପ୍ରାସାଦରେ 'ରମ୍ଭା ସମ୍ମିଳନୀ' ଅନୁଷ୍ଠିତ କରାଇଥିଲେ । ଏହି ସମ୍ମିଳନୀରେ ମଧୁବାବୁ ଯୋଗଦେଇ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ମିଶ୍ରଣ ବିଷୟରେ ହେଉଥିବା ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ । ୧୯୦୩ ମସିହା ଅପ୍ରେଲ ମାସରେ ବ୍ରହ୍ମପୁରରେ 'ଗଞ୍ଜାମ ଜାତୀୟ ସମ୍ମିଳନୀ' ଅନୁଷ୍ଠିତ ହୋଇଥିଲା । ଏହି ସମ୍ମିଳନୀର ଶ୍ୟାମ ସୁନ୍ଦର ରାଜଗୁରୁ ସଭାପତି ହୋଇଥିଲେ । ଦ୍ୱିତୀୟ ଦିବସରେ ମଧୁବାବୁ ସଭାପତି

ଆସନ ଅଳଙ୍କୃତ କରିଥିଲେ । ଏହାପରେ ମଧୁବାବୁ 'ଉତ୍କଳ ସମ୍ମିଳନୀ' ଗଠନ କରିବା ପାଇଁ ନିଷ୍ପତ୍ତି କଲେ । ତାଙ୍କ କଟକ ବାସଭବନରେ ଏ ବିଷୟରେ ଆଲୋଚ଼ନା ଆରମ୍ଭ ହେଲା । ୧୯୦୩ ମସିହା ଅକ୍ଟୋବର ମାସ ୨୫ ତାରିଖରେ କଟକର କନିକା ରାଜବାଟିରେ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କ ପୃଷ୍ଠପୋଷକତାରେ ସଭା ବସି ଉତ୍କଳ ସମ୍ମିଳନୀ ପାଇଁ ତାରିଖ ସ୍ଥିର ହେଲା । ଖଲ୍ଲିକୋଟ ରାଜା ହରିହର ମର୍ଦ୍ଦରାଜ, ଶ୍ରୀବତ୍ସ ପଣ୍ଡା ଓ ନୀଳମଣି ବିଦ୍ୟାରତ୍ନ ପ୍ରଭୃତି ସମ୍ମିଳନୀର ସଫଳତା ପାଇଁ କାର୍ଯ୍ୟ କରୁଥିଲେ । କଟକ ସହରର ଇଦ୍‌ଗା ପଡିଆରେ, ୧୯୦୩ ମସିହା ଡିସେମ୍ବର ୩୦ ଓ ୩୧ ତାରିଖ ଦୁଇଦିନ ଧରି ଉତ୍କଳ ସମ୍ମିଳନୀର ଅଧିବେଶନ ଅନୁଷ୍ଠିତ ହେଲା । ମୟୂରଭଞ୍ଜର ମହାରାଜା ଶ୍ରୀରାମଚ଼ନ୍ଦ୍ର ଭଞ୍ଜଦେଓ ସଭାପତି ଓ କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ଅଭ୍ୟର୍ଥନା କମିଟିର ଅଧ୍ୟକ୍ଷ ଏବଂ ମଧୁବାବୁ ସଂପାଦକ ଦାୟିତ୍ୱ ତୁଲାଇଥିଲେ । ଏହି ସମ୍ମିଳନୀରେ ୫ ଜଣ ରାଜା ଓ ୩୫୫ ଜଣ ପ୍ରତିନିଧି ଯୋଗ ଦେଇଥିଲେ । ଏହି ଉତ୍କଳ ସମ୍ମିଳନୀ ଓଡିଆ ଜାତିର ସଭା ଥିଲା । ଓଡିଆ ଭାଷାଭାଷୀ ଅଞ୍ଚଳଗୁଡିକୁ ମିଶ୍ରଣ କରି ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ଏବଂ ଓଡିଆମାନଙ୍କର ସର୍ବବିଧ ଉନ୍ନତି ବିଧାନ ଏହାର ମୂଳ ଲକ୍ଷ୍ୟ ଥିଲା । ଗୋପବନ୍ଧୁ ଦାସ, ମହାରାଜା ବିକ୍ରମଦେବ, ସମ୍ବଲପୁରର ଚ଼ନ୍ଦ୍ରଶେଖର ବେହେରା ପ୍ରଭୃତି ଉତ୍କଳ ସମ୍ମିଳନୀ ଗଠନରେ ଅଂଶ ଗ୍ରହଣ କରିଥିଲେ । ଉତ୍କଳ ସମ୍ମିଳନୀର ବିଭିନ୍ନ ଅଧିବେଶନରେ ଓଡିଶାର ବହୁ ବରପୁତ୍ର ଦାୟିତ୍ୱ ବହନ କରି କାର୍ଯ୍ୟ କରିଥିଲେ । ଗୋକୁଳାନନ୍ଦ ଚୌଧୁରୀ, ଗୋପାଳ ଚ଼ନ୍ଦ୍ର ପ୍ରହରାଜ, ଗୋପବନ୍ଧୁ ଦାସ, ମାୟାଧର ଦାସ , ଚ଼ିନ୍ତାମଣି ଆଚାର୍ଯ୍ୟ, ନବକିଶୋର ଦାସ, ପାରେଶ୍ୱର ମହାନ୍ତି ଓ ଲକ୍ଷ୍ମୀଧର ମହାନ୍ତିଙ୍କ ଭଳି ଉତ୍କଳର ସୁଯୋଗ୍ୟ ସନ୍ତାନଗଣ ମଧୁବାବୁଙ୍କ କନିଷ୍ଠ ଓକିଲ ଭାବେ ଜୀବନ ଆରମ୍ଭ କରିଥିଲେ ଓ ଉତ୍କଳ ସମ୍ମିଳନୀ ପାଇଁ କାର୍ଯ୍ୟ କରିଥିଲେ । ୧୯୦୭ ମସିହା ଜୁନମାସରେ ୨ୟ ଥର ମଧୁବାବୁ ଇଂଲଣ୍ଡ ଯାତ୍ରା କରି ଭାରତ ଶାସନ ସଚ଼ିବ ଲର୍ଡ ମର୍ଲେଙ୍କୁ ଭେଟି ଦାବୀପତ୍ର ଦେଇଥିଲେ । ଇଂଲଣ୍ଡର ପାର୍ଲାମେଣ୍ଟ ସଭ୍ୟମାନଙ୍କୁ ଓଡିଶାର ଦୁଃଖ ଦୁର୍ଦ୍ଦଶା ଜଣାଇଥିଲେ । ତାଙ୍କ ସହ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ଯାଇଥିଲେ । ସେଠାରେ ଏକ ସାମ୍ବାଦିକ ସମ୍ମିଳନୀ ମଧ କରିଥିଲେ । ମଧୁବାବୁ ୧୯୧୩ ମସିହା ଓ ୧୯୧୮ ମସିହାରେ ଉତ୍କଳ ସମ୍ମିଳନୀ ଅଧିବେଶନରେ ସଭାପତି ଦାୟିତ୍ୱ ଗ୍ରହଣ କରିଥିଲେ । ୧୯୧୭ ଉତ୍କଳ ସମ୍ମିଳନୀରେ ଅଭ୍ୟର୍ଥନା କମିଟିର ସଂପାଦକ ଦାୟିତ୍ୱ ତୁଲାଇଥିଲେ । ଉତ୍କଳ ସମ୍ମିଳନୀ ବିଭିନ୍ନ ଅଧିବେଶନରେ କିଶୋର ଚନ୍ଦ୍ର ସିଂହଦେଓ , ଜୟପୁର ରାଜା ବିକ୍ରମଦେବ ବର୍ମା, ଫକୀର ମୋହନ ସେନାପତି, ଜଗବନ୍ଧୁ ସିଂହ, ଭୁବନାନନ୍ଦ ଦାସ, ଲକ୍ଷ୍ମୀଧର ମହାନ୍ତି ଓ କୃଷ୍ଣଚନ୍ଦ୍ର ଗଜପତି ପ୍ରମୁଖ ସଭାପତିତ୍ୱ କରିଥିଲେ । ପଣ୍ଡିତ ଗୋଦାବରୀଶ ମିଶ୍ର, ନୀଳକଣ୍ଠ ଦାସ ଓ ଗୋରାଚାନ୍ଦ ପଟ୍ଟନାୟକ ପ୍ରଭୃତି ମହାତ୍ମାମାନଙ୍କର ଅବଦାନ ଅବିସ୍ମରଣୀୟ ।

ଉତ୍କଳ ସମ୍ମିଳନୀ ଓଡିଆମାନଙ୍କ ଜାତୀୟ ଜୀବନ ଗଢି ତୋଳିବାରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା ।

ମଧୁବାବୁ ବଙ୍ଗ ବିଧାନ ସଭାରେ ୧୮୯୭ ମସିହାରୁ ୧୯୧୨ ପର୍ଯ୍ୟନ୍ତ ମଝିରେ ଅଳ୍ପ ସମୟକୁ ଛାଡିଦେଲେ ସଦସ୍ୟ ଥିଲେ । ଓଡିଶାର ବହୁ ସମସ୍ୟା ବିଧାନସଭାରେ ଉତ୍‌ଥାପନ କରିଥିଲେ । ୧୯୧୩-୧୬ ପର୍ଯ୍ୟନ୍ତ ସେ କେନ୍ଦ୍ର ସଭାର ସଦସ୍ୟ ଥିଲେ । ବିହାର - ଓଡିଶା ବିଧାନସଭାର ମଧ୍ୟ ସେ ବହୁ ବର୍ଷ ସଭ୍ୟ ଥିଲେ ଓ ପରେ ୧୯୨୧ ମସିହାରେ ମଂତ୍ରୀ ହୋଇଥିଲେ । ସବୁଠାରେ ସେ ଓଡିଆମାନଙ୍କର ସମସ୍ୟା , ଓଡିଆଭାଷୀ ଅଞ୍ଚଳର ଏକତ୍ରିକରଣ ଓ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ବିଷୟରେ ଆଲୋଚ଼ନା ଓ ଦାବୀ କରୁଥିଲେ । ୧୯୧୬ ମସିହାରେ, ମଧୁବାବୁଙ୍କ ଉଦ୍ୟମରେ ପାଟନା ହାଇକୋର୍ଟର ଏକ ସର୍କିଟ କୋର୍ଟ, କଟକରେ ସ୍ଥାପିତ ହେଲା, ଯାହାପରେ ଓଡିଶା ହାଇକୋର୍ଟରେ ପରିଣତ ହେଲା । ୧୯୧୭ ମସିହାରେ ମେଣ୍ଟେଗୁ - ଚ଼େମସ୍‌ଫୋର୍ଡ ସଂସ୍କାର କମିଟିକୁ କଲିକତାରେ ସାକ୍ଷାତ୍ କରି ଓଡିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ରିକରଣ କରିବା ନିମିତ୍ତ ସେ ଦାବୀ କରିଥିଲେ । ଏତଦ୍‌ବ୍ୟତୀତ

ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ, ବିଶ୍ୱନାଥ କର, ବ୍ରଜ ସୁନ୍ଦର ଦାସ ଓ ଶଶୀଭୂଷଣ ରଥ ପ୍ରଭୃତି ଓଡିଆ ଅଞ୍ଚଳମାନଙ୍କର ମିଶ୍ରଣ ପ୍ରସ୍ତାବ ବିଧାୟକ ସଭାମାନଙ୍କରେ ଆଣିଥିଲେ । ବିଶ୍ୱନାଥ କର ବିହାର - ଓଡିଶା ବିଧାନସଭାର ଓଡିଆ ଭାଷାଭାଷୀ ଅଞ୍ଚଳମାନଙ୍କର ଏକତ୍ରିକରଣ ପାଇଁ ପ୍ରସ୍ତାବ ଆଣିଥିଲେ ଯାହାକି ଗୃହୀତ ହୋଇଥିଲା । ମାତ୍ର ଶଶୀ ଭୂଷଣ ରଥ ମାନ୍ଦ୍ରାଜ ବିଧାୟକ ସଭାରେ ଆଣିଥିବା ଏହି ପ୍ରସ୍ତାବ ଗଭର୍ଣ୍ଣରଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ହୋଇଥିଲା । କେନ୍ଦ୍ରୀୟ ବିଧାୟକ ପରିଷଦରେ ୧୯୨୦ ମସିହା ଫେବୃଆରୀ ୨୦ ତାରିଖରେ ବିହାରର ସଚ୍ଚିଦାନନ୍ଦ ସିହ୍ନା ବଙ୍ଗଳା ଓ ମାନ୍ଦ୍ରାଜରେ ଥିବା ଓଡିଆ ଭାଷାଭାଷୀ ଅଞ୍ଚଳକୁ ବିହାର- ଓଡିଶା ପ୍ରଦେଶରେ ଓଡିଶା ଡିଭିଜନ ସହିତ ମିଶ୍ରଣ ପାଇଁ, ଏକ କମିଟି ଗଢିବାକୁ ପ୍ରସ୍ତାବ ଦେଇଥିଲେ । ଏହି ପ୍ରସ୍ତାବକୁ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ସମର୍ଥନ କରିଥିଲେ । ପଣ୍ଡିତ ନୀଳକଣ୍ଠ ଦାସ ଓ ଭୁବନାନନ୍ଦ ଦାସ କେନ୍ଦ୍ରୀୟ ବିଧାୟକ ସଭାରେ ଓଡିଆ ଭାଷାଭାଷୀ ଅଞ୍ଚଳର ମିଶ୍ରଣ ପାଇଁ ପ୍ରଶ୍ନ ଉଠାଇଥିଲେ । ସାଇମନ କମିଶନକୁ ସାରା ଭାରତରେ ବିରୋଧ କରାଯାଉଥିବା ବେଳେ ମଧୁବାବୁ କମିଶନକୁ ପାଟନାଠାରେ ସ୍ମାରକପତ୍ର ଦେବାପାଇଁ ବ୍ରଜ ସୁନ୍ଦର ଦାସଙ୍କ ନେତୃତରେ ଏକ ପ୍ରତିନିଧି ଦଳ ପଠାଇଲେ । ଏହି ପ୍ରତିନିଧି ଦଳରେ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ, ଲକ୍ଷ୍ମୀଧର ମହାନ୍ତି , ଭିକାରୀ ଚ଼ରଣ ପଟ୍ଟନାୟକ, ବ୍ରଜାନନ୍ଦ ଦାଶ ଓ ବିଶ୍ୱନାଥ ମିଶ୍ର ପ୍ରଭୃତି ଯାଇଥିଲେ । ୧୯୨୮ ମସିହା ଡିସେମ୍ବର ୧୨ ତାରିଖରେ ଓଡିଶାର ପ୍ରତିନିଧି ଦଳ ପାଟନା ରେଳଷ୍ଟେସନରେ ସାଇମନ କମିଶନଙ୍କୁ ସ୍ୱାଗତ ଜଣାଇଲେ । ଓଡିଆ ଭାଷାଭାଷୀ ଅଞ୍ଚଳର ଏକତ୍ରିକରଣ କରି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ପାଇଁ ସାଇମନ କମିଶନଙ୍କୁ ପାଟନା ସଚ଼ିବାଳୟରେ ଦାବୀପତ୍ର ପ୍ରଦାନ କଲେ । ଫଳରେ ସାଇମନ କମିଶନ ତାଙ୍କ ରିପୋର୍ଟରେ ଓଡିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ କରିବା ପାଇଁ ସୁପାରିସ୍ କରିଥିଲେ । ଏହା ପୂର୍ବରୁ ମଧୁବାବୁ ୧୯୨୮ ମସିହା ଅପ୍ରେଲ ମାସରେ ବମ୍ବେରେ ବଟଲାର କମିଟିକୁ ସାକ୍ଷାତ୍ କରି ବିହାରରୁ ଷଢେଇକଳା ଓ ଖରସୁଆଁ ଗଡ଼ଜାତକୁ ଆଣି ଓଡିଶା ସହ ମିଶ୍ରଣ କରିବାକୁ ଦାବୀ କରିଥିଲେ ।

୧୯୩୧ ମସିହାରେ ଇଂଲଣ୍ଡ ଯାଇ ପାରଳା ମହାରାଜା କୃଷ୍ଣଚ଼ନ୍ଦ୍ର ଗଜପତି ଗୋଲ ଟେବୁଲ ବୈଠକରେ ଯୋଗ ଦେଇଥିଲେ ଓ ଓଡିଆଭାଷୀ ଅଞ୍ଚଳର ଏକୀକରଣ ପାଣଁ ଦୃଢ ଯୁକ୍ତି ଉପସ୍ଥାପନ କରିଥିଲେ । ସେ ତାଙ୍କର ବକ୍ତବ୍ୟ ଯୁକ୍ତିଛଳରେ ରଖି କହିଥିଲେ - As one well informed of the facts, I should lay before you all to-day the formation of a separate province for the oriyas is a life and death problem to them. ଓଡିଶା ପ୍ରଦେଶର ସୀମା ନିର୍ଦ୍ଧାରଣ ପାଇଁ ଗଠିତ ଓଡେନେଲ କମିଟିକୁ ୧୯୩୨ ମସିହା ଜାନୁଆରୀ ମାସରେ ମଧୁବାବୁ କଟକ ରେଳ ଷ୍ଟେସନରେ ସ୍ୱାଗତ ଜଣାଇଲେ । ବୃଦ୍ଧାବସ୍ଥାରେ ଜାମସେଦପୁର ଯାଇ ସିଂହଭୂମି ଜିଲ୍ଲାକୁ ଓଡିଶାରେ ମିଶାଇବା ପାଇଁ ଜନମତ ସୃଷ୍ଟି କରିଥିଲେ । ୧୯୩୨ ମସିହା ଜୁଲାଇ ମାସରେ ଲଣ୍ଡନରେ ଲର୍ଡ ଲିନ୍‌ଲିଥ୍‌ଗୋଙ୍କ ଅଧକ୍ଷତାରେ ଗଠିତ ଜଏଣ୍ଟ ପାର୍ଲାମେଣ୍ଟାରି କମିଟି ଆଗରେ ପାରଳା ମହାରାଜା କୃଷ୍ଣଚ଼ନ୍ଦ୍ର ଗଜପତି ସାକ୍ଷ୍ୟ ପ୍ରଦାନ କରି ପାରଳାଖେମୁଣ୍ଡି , ଜୟପୁର, ଗଞ୍ଜାମ ଓ କୋରାପୁଟ ପ୍ରଭୃତିକୁ ଓଡିଶାରେ ମିଶ୍ରଣ ପାଇଁ ମତ ରଖିଲେ । ତାଙ୍କ ସହିତ ଖଲ୍ଲିକୋଟର ରାଜା ବାହାଦୁର ଶ୍ରୀ ରାମଚ଼ନ୍ଦ୍ର ମର୍ଦ୍ଦରାଜ, ଲିଙ୍ଗରାଜ ପାଣିଗ୍ରାହୀ, ଶ୍ୟାମସୁନ୍ଦର ଗନ୍ତାୟତ ଓ ଭୁବନାନନ୍ଦ ଦାସ ମଧ୍ୟ ଇଂଲଣ୍ଡ ଯାଇଥିଲେ । ସାର୍ ଜନ୍ ଅଷ୍ଟିନ ହବାକ୍‌ଙ୍କ ଅଧକ୍ଷତାରେ ୧୯୩୩ ମସିହାରେ ଅପ୍ରେଲ ମାସ ୨୬ ତାରିଖରେ ଓଡିଶା ପ୍ରଶାସନିକ କମିଟି ଗଠିତ ହେଲା । ମଧୁବାବୁ ଏହି କମିଟିର ଜଣେ ସଭ୍ୟ ଥିଲେ । ରୁଗ୍‌ଣାବସ୍ଥା ସତ୍ତ୍ୱେ ସେ କମିଟି ସହ ବିଭିନ୍ନ ଅଞ୍ଚଳ ଗସ୍ତ କଲେ । ଓଡିଶା ପ୍ରଶାସନିକ କମିଟି ରିପୋର୍ଟରେ ମଧୁବାବୁ ଦସ୍ତଖତ ଦେଲେ ଓ ଏହାହିଁ ତାଙ୍କର ସ୍ୱତନ୍ତ୍ର ଓଡିଶା ଗଠନ ପାଇଁ ଶେଷ କାର୍ଯ୍ୟ ଥିଲା । ୧୯୩୩ ସମିହା ଡିସେମ୍ବର ୨୦ ତାରିଖରେ ଏହି କମିଟିର ରିପୋର୍ଟ ପ୍ରକାଶିତ ହୋଇଥିଲା । ଏହାର ଦେଢମାସ ପରେ ୧୯୩୪

ମସିହା ଫେବୃଆରୀ ୪ ତାରିଖରେ ଓଡିଆ ଜାତିର ମୁକୁଟ ବିହୀନ ସମ୍ରାଟ୍, ଉତ୍କଳଗୌରବ ମଧୁସୂଦନ ଦାସ ଶେଷ ନିଃଶ୍ୱାସ ତ୍ୟାଗ କଲେ ।

ଓଡିଶାର ମହାମନୀଷୀମାନଙ୍କର ଆପ୍ରାଣ ଉଦ୍ୟମ ଫଳରେ ଓଡିଶା ଏକ ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ପାଇଲା । ଓଡିଆ ଜାତୀୟତା ନବଜାଗରଣର ମହାଯଜ୍ଞରେ ଆହୂତି ପ୍ରଦାନ କରିଥିବା ସମସ୍ତ ପୁଣ୍ୟାତ୍ମାମାନେ ଓଡିସାବାସୀଙ୍କର ଚିର ନମସ୍ୟ । ଉତ୍କଳ ସମ୍ମିଳନୀ ଓଡିଆ ଜାତିର ମିଳନ ମଞ୍ଚ ଥିଲା । ଭାଷା ନ ରହିଲେ ଜାତି ରହିବ ନାହିଁ । ଓଡିଆ ଜାତିର ପ୍ରାଚୀନତା ଓ ଭାଷା, ସାହିତ୍ୟ ଏବଂ ଐତିହ୍ୟର ମହାନତା ଆମମାନଙ୍କର ପରିଚ଼ୟ । ଏହି ପରିଚ଼ୟ ଯେପରି ଅକ୍ଷୁଣ୍ଣ ରହେ ସେଥିପାଇଁ ପ୍ରତ୍ୟେକ ଓଡିଆ କାର୍ଯ୍ୟ କରିବାକୁ ସଂକଳ୍ପବଦ୍ଧ ହେବା ଆବଶ୍ୟକ । ଓଡଆ ଜାତିର ପ୍ରାଣରେ ଜାତୀୟତାର ନବଜାଗରଣ ବୀଜ ପୁନଃବପନ କରି ଆମର ପୂର୍ବଜ ପୁଣ୍ୟାତ୍ମାମାନଙ୍କ ପଥ ଅନୁସରଣ କରି ନବ ଓଡିଶା ନିର୍ମାଣ କରିବାରେ ଆମର ଦାୟିତ୍ୱ ନିର୍ବାହ କରିବାକୁ ହେବ ।

**ସହାୟିକା ପୁସ୍ତିକା**

୧) 'ଉତ୍କଳ ସମ୍ମିଳନୀ ଓ ଓଡିଶାର ଜାତୀୟ ଜୀବନ' ଶ୍ରୀ ପଠାଣି ପଟ୍ଟନାୟକ, ଉତ୍କଳ ନିର୍ଘୋଷ, ୨୦୦୧, ସଂ–ଡ. ବିଚିତ୍ରାନନ୍ଦ ମହାନ୍ତି, ବାଦାମବାଡି, କଟକ–୧୨

୨) 'ଜୟ ଯାତ୍ରାପଥେ ଉତ୍କଳ', ଡ. ବ୍ରଜମୋହନ ମହାନ୍ତି , ଉତ୍କଳ ନିର୍ଘୋଷ, ୨୦୦୧ ସଂ–ଡ.ବିଚିତ୍ରାନନ୍ଦ ମହାନ୍ତି, ବାଦାମବାଡି, କଟକ–୧୨

୩) 'ସୁନାଦୀପ ଲିଭିଗଲା', ଡ଼. ଶରତ କୁମାର ବିଶ୍ୱାଳ, ୨୦୧୩, ଶୈଳଶ୍ରୀ ବିହାର, ଭୁବନେଶ୍ୱର–୨୧.

୪) 'ପାରଳା ସମ୍ମିଳନୀ'–ଏକ ବିହଙ୍ଗାବଲୋକନ', ଶ୍ରୀ ପଠାଣି ପଟ୍ଟନାୟକ, ଉତ୍କଳ ନିଦାନ, ୨୦୦୨ ସଂ– ଡ. ବିଚିତ୍ରାନନ୍ଦ ମହାନ୍ତି, ବାଦାମବାଡି,

୫) 'ଉତ୍କଳ ସମ୍ମିଳନୀର ଅଗ୍ରଜା 'ଉତ୍କଳ ସଭା' ଡ. ବିଚିତ୍ରାନନ୍ଦ ମହାନ୍ତି, ଉତ୍କଳ ନିଦାନ, ୨୦୦୨, ବାଦାମବାଡି, କଟକ–୧୨

୬) 'ଆମ ଭାଷାର କଳା ପାହାଡମାନେ' ଡ.ଶ୍ୟାମସୁନ୍ଦର ମିଶ୍ର , ଉତ୍କଳ ନିକ୍ୱଣ, ୨୦୦୬ ସଂ–ଶ୍ୟାମପ୍ରସନ୍ନ ମିଶ୍ର, ଉତ୍କଳ ସମ୍ମିଳନୀ, କଟକ ଜିଲ୍ଲା

୭) 'ସାହିତ୍ୟର ଏକ୍ସୁଡିଶାଳ: ସମ୍ବାଦପତ୍ର' ଗୌରିହରି ଦାସ, ଉତ୍କଳ ନିକ୍ୱଣ, ୨୦୦୬ ଉତ୍କଳ ସମ୍ମିଳନୀ, କଟକ ଜିଲ୍ଲା

୮) ଉତ୍କଳ ସମ୍ମଳନୀ– ଜାତୀୟ ସ୍ୱାଭିମାନର ପ୍ରାଣ ପ୍ରତିଷ୍ଠାତା, ପଠାଣି ପଟ୍ଟନାୟକ, ଉତ୍କଳ ତରଙ୍ଗ, ୨୦୦୮, ସଂ–ଶ୍ୟାମପ୍ରସନ୍ନ ମିଶ୍ର, ଉତ୍କଳ ସମ୍ମିଳନୀ, କଟକ–୯

୭/ଏମ୍–୫୧, ଶୈଳଶ୍ରୀ ବିହାର
ଭୁବନେଶ୍ୱର–୨୧



# ଶ୍ରମିକ ଐକ୍ୟ ଓ ସଂଗ୍ରାମର ପ୍ରତୀକ : ଶ୍ରମିକ ଦିବସ

**ଡକ୍ଟର ସୌରୀବଂଧୁ କର**

ମଇ ପହିଲା ହେଉଛି ବିଶ୍ୱ ଶ୍ରମିକ ଦିବସ ବା ଆନ୍ତର୍ଜାତିକ ଶ୍ରମିକ ଦିବସ । କ'ଣ ଏହାର ଇତିହାସ? କାହିଁକି ଆମେ ପାଳନ କରିବା ଏହି ଦିବସଟିକୁ? ବିଶ୍ୱ ଶ୍ରମିକ ଦିବସ ହେଉଛି ସଂଗ୍ରାମର ଦିବସ । ଶ୍ରମିକର ବଳିଦାନର ଦିବସ । ଏହାର ଇତିହାସକୁ ଜାଣିବା ହିଁ ବର୍ତ୍ତମାନ ଓ ଭବିଷ୍ୟତ ସଂଗ୍ରାମର ଅସ୍ତ୍ର । ଆଜିକୁ ୧୬୪ ବର୍ଷ ପୂର୍ବେ ପ୍ରଥମେ ମେସିନ୍ ସାହାଯ୍ୟରେ ଉତ୍ପାଦନ ଆରମ୍ଭ ହୋଇଥିଲା । ଉତ୍ପାଦନରେ ଅଂଶଗ୍ରହଣ କରୁଥିବା ଶ୍ରମିକମାନେ ସୂର୍ଯ୍ୟୋଦୟଠାରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଅକଥନୀୟ ପରିସ୍ଥିତିରେ କାର୍ଯ୍ୟ କରୁଥିଲେ । ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଆମେରିକାର ଶ୍ରମିକମାନେ ଏଇ ପ୍ରଥା ବିରୁଦ୍ଧରେ ପ୍ରଥମେ ସ୍ୱର ଉତ୍ତୋଳନ କଲେ ।



୧୮୨୦ ଓ ୧୮୩୦ ମସିହା ମଧ୍ୟରେ କାମ ସମୟ ୧୦ ଘଣ୍ଟା ଦାବି ନେଇ ଧର୍ମଘଟ ଆରମ୍ଭ ହେଲା । ଏହି ୧୦ ଘଣ୍ଟା ଦାବିକୁ ନେଇ ୧୮୩୨ରେ ଫିଲାଡେଲ୍‌ଫିଆ ମେକାନିକ୍ ୟୁନିୟନ୍ ଗଠିତ ହେଲା । ୧୮୩୪ ମସିହାରେ ନ୍ୟୁୟର୍କରେ ଶ୍ରମିକମାନଙ୍କର ଖବରକାଗଜ ୱାର୍କିଂ ମେନସ୍ ଆଡଭୋକେଟ ପ୍ରଥମେ ପ୍ରକାଶ ପାଇ ଏହି ଦାବି ନେଇ ଆନ୍ଦୋଳନ ସୃଷ୍ଟି କଲା । ଆମେରିକାରେ ଏହି ଆନ୍ଦୋଳନ ଜୋରସୋରରେ ହେବା ଫଳରେ ରାଷ୍ଟ୍ରପତି ଭ୍ୟାନ୍ ବୁରେନ୍ ୧୦ ଘଣ୍ଟା କାମ କରିବାର ଆଇନ୍ କଲେ । ସରକାରୀ ଅନୁଷ୍ଠାନମାନଙ୍କରେ ୧୦ ଘଣ୍ଟା କାର୍ଯ୍ୟ ସମୟ ସ୍ଥିର ହେଲା କିନ୍ତୁ ତାହା କଳକାରଖାନାରେ ଲାଗୁ କରାଗଲା ନାହିଁ । ଏଥିପାଇଁ ୧୦/୧୨ବର୍ଷ ଆନ୍ଦୋଳନ ଚାଲିଲା । ଶ୍ରମିକମାନେ ୮ଘଣ୍ଟା କାମର ଦାବି ଉଠାଇଲେ । ୧୮୫୦ ମସିହା ବେଳକୁ ଏଇ ଦାବି ଉପରେ ଚାରିଆଡ଼େ ଶ୍ରମିକ ସଂଗଠନ ଗଢ଼ି ଉଠିଲା । ଏ ଆନ୍ଦୋଳନ କେବଳ ଆମେରିକାରେ ସୀମାବଦ୍ଧ ହୋଇ ରହିଲା ନାହିଁ । ଯେଉଁଠି ପୁଞ୍ଜିବାଦ ଶ୍ରମିକମାନଙ୍କୁ ଶୋଷଣ କରୁଥିଲା, ସେଠାରେ

ମଧ୍ୟ ଏ ଆନ୍ଦୋଳନ ଦେଖାଦେଲା । ଅଷ୍ଟ୍ରେଲିଆର ରାଜମିସ୍ତ୍ରୀମାନେ ଦାବି ଉଠାଇଲେ, ''୮ ଘଣ୍ଟା କାମ, ୮ ଘଣ୍ଟା ଖେଳାବୁଲା ଓ ୮ ଘଣ୍ଟା ବିଶ୍ରାମ ।''

୮ ଘଣ୍ଟା କାର୍ଯ୍ୟ ସମୟ ଦାବିରୁ ଜନ୍ମ ନେଲା ବିଶ୍ୱ ଶ୍ରମିକ ଦିବସ । ୧୮୮୪ ମସିହାଠାରୁ ଏହି ଦାବି ନେଇ ଧାରାବାହିକ ଆନ୍ଦୋଳନ ଆମେରିକାରେ ଚାଲିଲା । ଏହି ଆନ୍ଦୋଳନ ଆରମ୍ଭ ହେବା ପୂର୍ବରୁ ୧୮୬୬ ଅଗଷ୍ଟ ୨୦ ତାରିଖ ଦିନ ବାଲ୍‌ଟିମୋର୍ ସହରରେ ପ୍ରାୟ ୪୦ଗୋଟି ଟ୍ରେଡ୍ ୟୁନିୟନ୍ ଏକାଠି ହୋଇ ଲେବର ୟୁନିୟନ୍ ଗଠନ କଲେ ଏବଂ ଏହାର ନେତୃତ୍ୱ ନେଲେ ମୋର୍ ଡର୍ସ ୟୁନିୟନ୍‌ର ନେତା ଉଇଲିୟମ ଏଚ୍ ସିଭିଲସ୍ । ନ୍ୟାସନାଲ ଲେବର ୟୁନିୟନ୍ ୧୮୬୬ ମସିହାରେ ୮ ଘଣ୍ଟା କାମ ପାଇଁ ଦାବି ଉଠାଇଲା ଏବଂ ଚାରିଆଡ଼େ ଆନ୍ଦୋଳନ ହେଲା । ୧୮୬୮ ମସିହାରେ ଆମେରିକାର କେତେକ ରାଜ୍ୟ ସରକାର ୮ଘଣ୍ଟା ଦାବିକୁ ମାନିନେଲେ ଓ ଯୁକ୍ତରାଷ୍ଟ୍ର ସରକାର ଆଇନ୍ ପାଶ୍ କଲେ । ସିଭିଲସ୍‌ଙ୍କର ମୃତ୍ୟୁ ଘଟିଲା କିନ୍ତୁ ଆନ୍ଦୋଳନ ଜାରି ରହିଲା । ୧୮୬୬ରେ ଜେନେଭାଠାରେ ପ୍ରଥମ ଆନ୍ତର୍ଜାତିକ କଂଗ୍ରେସ ଦୈନିକ ୮ଘଣ୍ଟା କାମକୁ ଶ୍ରମିକ ଶ୍ରେଣୀ ମୁକ୍ତି ଆନ୍ଦୋଳନର ପ୍ରାଥମିକ ଆବଶ୍ୟକତା ବୋଲି ନିର୍ଦ୍ଧାରଣ କଲେ । ୧୮୮୪ ମସିହା ଅକ୍ଟୋବର ୭ ତାରିଖରେ ଆମେରିକା ଶ୍ରମିକ ସଂଗଠନମାନଙ୍କର କନ୍‌ଭେନ୍‌ସନ୍‌ରେ ମଇ ଦିବସରେ ଦିନକୁ ୮ଘଣ୍ଟା କାମର ଦାବି ଉତ୍‌ଥାପନ କରିବାକୁ ସ୍ଥିର କରାଗଲା । ଏହି ଶ୍ରମିକ ସଂଗଠନର ନାମ ଥିଲା ଫେଡେରେସନ୍ ଅଫ୍ ଅର୍ଗାନାଇଜଡ୍ ଟ୍ରେଡ୍‌ସ ଆଣ୍ଡ୍ ଲେବର ୟୁନିୟନ୍ ଅଫ୍ ୟୁନାଇଟେଡ୍ ଷ୍ଟେଟ୍‌ସ ଏଣ୍ଡ୍ କାନାଡା, ଯାହା ପରେ ପରିବର୍ତ୍ତିତ ହୋଇହେଲା ଆମେରିକାନ୍ ଫେଡେରେସନ୍ ଅଫ୍ ଲେବର ନାମରେ । ସେମାନେ ୮ଘଣ୍ଟା କାର୍ଯ୍ୟ ସମୟର ପ୍ରସ୍ତାବ ଗ୍ରହଣ କଲେ ଏବଂ ୧୮୮୬ ମସିହା ମଇ ପହିଲା ଦିନ ଏହି ଦାବିନେଇ ଯେତେବେଳେ ଧର୍ମଘଟ ଆରମ୍ଭ କରାଗଲା ଯୁକ୍ତରାଷ୍ଟ୍ରର ୧୩ ହଜାର ବ୍ୟବସାୟିକ ସଂସ୍ଥାର ତିନିଲକ୍ଷ ଶ୍ରମିକ ଏଥିରେ ଅଂଶଗ୍ରହଣ କଲେ । ଚିକାଗୋ ସହରରେ ୪୦ ହଜାର ଶ୍ରମିକ ଏଥିରେ ଯୋଗଦେବା ଫଳରେ ଚିକାଗୋ ସହରରେ ରାସ୍ତାଘାଟ ବନ୍ଦ ହୋଇଗଲା । ଶ୍ରମିକମାନଙ୍କର ବିକ୍ଷୋଭ ଆହୁରି ଦୁଇଦିନ ଚାଲିଲା । ୧୮୮୬ର ଏହି ଶ୍ରମିକ ଆନ୍ଦୋଳନ ଶ୍ରମିକ ଶ୍ରେଣୀର ଇତିହାସରେ ଏକ ମହତ୍ତ୍ୱପୂର୍ଣ୍ଣ ଓ ଗୌରବୋଜ୍ଜ୍ୱଳ ଘଟଣା ।

ଶ୍ରମିକ ଆନ୍ଦୋଳନକୁ ଦମନ କରିବାକୁ ସରକାର ଓ ମାଲିକ ଚୁପ୍ ହୋଇ ବସି ପାରିଲେ ନାହିଁ । ମଇ ୩ ତାରିଖରେ ମ୍ୟାକ୍‌ହରମିନ୍ ହାରେଭେଷ୍ଟ ପ୍ଲାଣ୍ଟ୍‌ର ଧର୍ମଘଟକାରୀ ଶ୍ରମିକମାନଙ୍କ ଉପରେ ପୋଲିସ ଆକ୍ରମଣ କଲା । ଶାନ୍ତିପୂର୍ଣ୍ଣ ସଭା ଉପରେ ପୋଲିସ ଆକ୍ରମଣ ଫଳରେ ୬ଜଣ ପ୍ରାଣ ହରାଇଲେ ଓ ଅନେକ ଆହତ ହେଲେ । ମଇ ୪ ତାରିଖରେ ଏହାର ପ୍ରତିବାଦ ସଭା ହେ' ମାର୍କେଟ୍‌ର ଅନୁଷ୍ଠିତ ହେଲା । ସଭା ଶେଷବେଳକୁ ହଠାତ୍ ଏକ ବୋମା ବିସ୍ଫୋରଣ ଘଟି ୭ ଜଣ ପୋଲିସ ଓ ୪ ଜଣ ଶ୍ରମିକଙ୍କର ମୃତ୍ୟୁ ହେଲା । ନିରସ୍ତ୍ର ଜନତା ଉପରେ ପୁଲିସର ନୃଶଂସ ଓ ନିର୍ମମ ଆକ୍ରମଣ ଆରମ୍ଭ ହେଲା । ଶ୍ରମିକ ରକ୍ତରେ ଲାଲ୍‌ରଂଜିତ ହୋଇଗଲା ହେ' ମାର୍କେଟ ସ୍କୋୟାର' । ସେଠାରେ ଉପସ୍ଥିତ ଓ ଅନୁପସ୍ଥିତ ଶ୍ରମିକନେତା ଆଲବର୍ଟ ଆର ପାରସନ, ଅଗଷ୍ଟ ସ୍ପାଇଜ, ସାମୁଏଲ ଜେ ପିଲେଡ, ୟଜେନ ସ୍କାୱାବ, ୱାଡଲଫ୍ ଫିସର, ଜର୍ଜ ଏଙ୍ଗେଲସ, ଲିଇସିଙ୍ଗ ଓ ଓସ୍କାର ନିବେଙ୍କୁ ଆରେଷ୍ଟ କରାଗଲା । ସେମାନଙ୍କର ବିଚାର ହେଲା । ବିଚାରରେ ୭ଜଣଙ୍କୁ ଫାଶୀ ଓ ନିବେଙ୍କୁ ୧୫ବର୍ଷ ଜେଲ ହେଲା ।

୧୮୮୭ ନଭେମ୍ବର ୧୧ତାରିଖ । ଶ୍ରମିକନେତା ପାରାସନ୍, ସ୍ପାଇଜ, ଫିସର ଏବଂ ଏଙ୍ଗେଲସ୍‌କୁ ନିର୍ମମ ଭାବରେ ଫାଶୀ ଦିଆଗଲା । ଜେଲଖାନାର ନିଭୃତ କୋଠରିରେ 'ଲିଙ୍ଗ'କୁ ମରିପଡିଥିବାର ଦେଖାଗଲା । ଶ୍ରମିକମାନଙ୍କର ୮ଘଣ୍ଟା କାମର ସମୟ ନେଇ ଏହା ଥିଲା ସଂଗ୍ରାମୀ ନେତାମାନଙ୍କର ବଳିଦାନ । ୧୮୮୬ରେ ପୁନଶ୍ଚ ସେହି ଦାବିନେଇ ଧର୍ମଘଟ ହେଲା । ୧୮୮୯ ଜୁଲାଇ

୪ ତାରିଖରେ ପ୍ୟାରିସ୍‌ଠାରେ 'ଦ୍ୱିତୀୟ ଆନ୍ତର୍ଜାତିକ' ଗଠିତ ହେଲା । ଆମେରିକା ଶ୍ରମିକଶ୍ରେଣୀର ବୀରତ୍ୱପୂର୍ଣ୍ଣ ମଇ ଦିବସ ସଂଗ୍ରାମରେ ଅନୁପ୍ରାଣିତ ହୋଇ ଦ୍ୱିତୀୟ ଆନ୍ତର୍ଜାତିକ ୧୮୯୦ ମସିହାଠାରୁ ମଇ ପହିଲାକୁ ଆନ୍ତର୍ଜାତିକ ଶ୍ରମିକ ଦିବସ ରୂପେ ପାଳନ କରିବାକୁ ନିଷ୍ପତ୍ତି ଗ୍ରହଣ କଲେ । ୧୮୯୩ ଖ୍ରୀଷ୍ଟାବ୍ଦରେ ଦ୍ୱିତୀୟ ଆନ୍ତର୍ଜାତିକ ଜୁରିକ୍‌ଠାରେ ବସିଲା । ଏଙ୍ଗେଲସ୍‌ଙ୍କ ଉପସ୍ଥିତିରେ କଂଗ୍ରେସ ପୂର୍ବବର୍ଷର ମଇ ଦିବସର ପ୍ରସ୍ତାବ ସହିତ ନିମ୍ନଲିଖିତ ପ୍ରସ୍ତାବ ଯୋଗ ହେଲା ।

'ମଇ ପହିଲାରେ ୮ଘଣ୍ଟା କାମର ଦିନ ପାଇଁ ସଭା ଓ ଶୋଭାଯାତ୍ରା ହେବା ସଂଗେ ସଂଗେ ଏହା ଶ୍ରମିକ ଶ୍ରେଣୀର ଦୃଢ଼ ଇଚ୍ଛା ପ୍ରକାଶର ଏକ ପ୍ରଦର୍ଶନୀ ହିସାବରେ ପରିଚାଳିତ ହେବ । ଏହି ଦୃଢ଼ ଇଚ୍ଛା ଯୋଗୁଁ ଶ୍ରମିକ ଶ୍ରେଣୀ ସାମାଜିକ ପରିବର୍ତ୍ତନ ଜରିଆରେ ସମସ୍ତ ଶ୍ରେଣୀ ପାର୍ଥକ୍ୟକୁ ଲୋପ କରିବ ଏବଂ ଏହିପରି ଭାବରେ ଆନ୍ତର୍ଜାତିକ ଶାନ୍ତି ଓ ସମସ୍ତ ଜାତିମାନଙ୍କର ଶାନ୍ତି ପ୍ରତିଷ୍ଠା ଦିଗରେ ଏକମାତ୍ର ରାସ୍ତାରେ ପରିଚାଳିତ ହେବ ।'

ସମଗ୍ର ବିଶ୍ୱର ମୁକ୍ତିକାମୀ ଜନତା ସମ୍ମୁଖରେ ଏହି ଦିବସ ଅନେକ ତାତ୍ପର୍ଯ୍ୟ ବହନ କରି ଏଯାବତ୍ ଚାଲିଛି ।

ଲେନିନ୍‌ଙ୍କ ମତରେ, ମଇ ଦିବସ ସମାରୋହ ହେଉଛି ଘଟଣାମାନଙ୍କ ମଧ୍ୟରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ସମସ୍ତ ରାଷ୍ଟ୍ରମାନଙ୍କରେ ଥିବା ସର୍ବହରାମାନଙ୍କ ଦ୍ୱାରା ଉପସ୍ଥାପିତ କାର୍ଯ୍ୟ ସମୟ ୮ଘଣ୍ଟା ଦାବି ହେଉଛି ସର୍ବପ୍ରଥମ ଦାବି । ଆଠଘଣ୍ଟାରେ ଏହି ଦାବି ହେଉଛି ସମଗ୍ର ସର୍ବହରା ଶ୍ରେଣୀର ଦାବି, କୌଣସି ବ୍ୟକ୍ତି ମାଲିକାନା ନିକଟରେ ନୁହେଁ ବରଂ ସାମାଜିକ ଓ ରାଜନୈତିକ ବ୍ୟବସ୍ଥାର ପ୍ରତିନିଧିତ୍ୱ କରୁଥିବା ସମସ୍ତ ସରକାରଙ୍କ ନିକଟରେ, ସମସ୍ତ ପୁଞ୍ଜିପତି ଶ୍ରେଣୀ ନିକଟରେ ଏବଂ ଉତ୍ପାଦନ ସନ୍ଧାନରେ ଲିପ୍ତ ଥିବା ସମସ୍ତ ମାଲିକମାନଙ୍କ ନିକଟରେ ।

ମେ ପହିଲାରେ ବିଶ୍ୱ ଶ୍ରମିକ ଦିବସ ପାଳନ କରିବା ବେଳେ ଶ୍ରମିକ ଶ୍ରେଣୀକୁ ମନେ ରଖିବାକୁ ହେବ ଯେ, ଆମେ ସଂଗ୍ରାମ କରି ବଂଚିବା ଓ ବଂଚିବା ପାଇଁ ସଂଗ୍ରାମ କରିବା । ଏହି ସଂକଳ୍ପ ନେଇ ଆଗକୁ ଚାଲିବା ।

ଗଜପତି ନଗର
ଭୁବନେଶ୍ୱର



# ଶ୍ରୀରାମ ନବମୀର ତାତ୍ପର୍ଯ୍ୟ

**ମଧୁସୂଦନ ପଟ୍ଟନାୟକ**

ଦୁଷ୍ଟ ଦାନବମାନଙ୍କ ଅତ୍ୟାଚାରରେ ଅତିଷ୍ଠ ହୋଇ ଦେବତା, ଋଷିଗଣ ଶଙ୍ଖ, ଚକ୍ର, ଗଦାଧାରୀ ଭଗବାନ ବିଷ୍ଣୁଙ୍କୁ ସ୍ତୁତି କଲେ । ଭଗବାନ ବିଷ୍ଣୁ ସେମାନଙ୍କୁ ଆଶ୍ୱାସନା ଦେଇ କହିଲେ – ତୁମ୍ଭମାନଙ୍କ କଲ୍ୟାଣ ନିମନ୍ତେ ରାକ୍ଷସ ରାବଣ ଓ ତା'ର ଅନୁଚରମାନଙ୍କୁ ସଂହାର କରିବାକୁ ମୁଁ ମର୍ତ୍ତ୍ୟରେ ମାନବ ରୂପରେ ଅବତାର ନେବି । ତୁମ୍ଭେମାନେ ଯାଅ, ନିର୍ଭୟରେ ବାସ କର । ଏହା ଶୁଣି ସେମାନେ ଭଗବାନଙ୍କ ଆଗମନକୁ ଅପେକ୍ଷା କରି ରହିଲେ ।

ତ୍ରେତୟା ଯୁଗରେ ଭଗବାନ ବିଷ୍ଣୁ ଶ୍ରୀରାମ ରୂପରେ ପୁଣ୍ୟ ପ୍ରକଟନ କଲେ । ପୌରାଣିକ ତଥ୍ୟାନୁସାରେ କଥିତ ଅଛି ଯେ ଦଶରଥ ପୂର୍ବଜନ୍ମରେ ବ୍ରାହ୍ମଣ ଥିଲେ । ସେ ପ୍ରତ୍ୟେକ ଦିନ ନିକଟସ୍ଥ ଏକ ଶିବମନ୍ଦିର ଯାଇ ଏକ ହଜାର ତୁଳସୀ ଜଳ ଶିବଙ୍କ ଉପରେ ଚଢ଼ାଉଥିଲେ । କ୍ରମେ ବ୍ରାହ୍ମଣ ବୃଦ୍ଧ ହେଲେ । ତାଙ୍କୁ ୮୫ ବର୍ଷ ହୋଇଗଲା । ଦିନେ ତାଙ୍କୁ ଭୀଷଣ ଜ୍ୱର ହେବାରୁ ମନ୍ଦିର ଯାଇ ପାରିଲେ ନାହିଁ । ଜ୍ୱରକୁ କହିଲେ –ଜ୍ୱର, ତୁ ଟିକିଏ ଅପେକ୍ଷା କର । ମୁଁ ଶିବଙ୍କୁ ତୁଳସୀ ଚଢ଼ାଇ ଆସିବା ପରେ ତୁ ମୋ ପାଖକୁ ଆସିବୁ ।

ଜ୍ୱର କମିଗଲା । ତୁଳସୀ ନେଇ ମନ୍ଦିର ଗଲେ । ଦେଖିଲେ– ମନ୍ଦିର ଶୁନ୍‌ଶାନ । କେବଳ ଜଣେ ସ୍ତ୍ରୀ ଲୋକର କାନ୍ଦଣା ତାଙ୍କ କାନରେ ପଡୁଥିଲା । ନିକଟକୁ ଯାଇ ପଚାରିଲେ । ସ୍ତ୍ରୀ ଲୋକଟି କହିଲା – ମୁଁ ପୂର୍ବଜନ୍ମରେ ଭାରି ଦୁଷ୍ଟ ଥିଲି । ସ୍ୱାମୀଙ୍କୁ ବହୁତ ଯନ୍ତ୍ରଣା ଦେଲି । ଏ ପରିଣାମ ଭୋଗୁଛି । ମୋତେ ଏଥିରୁ ଉଦ୍ଧାର କରନ୍ତୁ ।

ପ୍ରଭୁ ପ୍ରସନ୍ନ ହେଲେ, କହିଲେ – ପର ପାଇଁ ସମସ୍ତ ପୁଣ୍ୟ ଅର୍ପଣ କରିଥିବାରୁ ମୁଁ ତୋତେ ବରଦାନ କରୁଛି ଯେ ପରଜନ୍ମରେ ମୁଁ ଅଯୋଧ୍ୟାର ରାଜା ହେବି । ଏହି ପିଶାଚିନୀ ହେବ ତୋର ପତ୍ନୀ, ଆଉ ମୁଁ ତୋର ପୁତ୍ର ରୂପେ ଜନ୍ମନେବି । ଏହା କହି ବ୍ରାହ୍ମଣ ସେହିଠାରେ ଦେହ ତ୍ୟାଗ କଲେ । ପରଜନ୍ମରେ ବ୍ରାହ୍ମଣ ହେଲେ ମହାରାଜ ଦଶରଥ । ପିଶାଚିନୀ ହେଲେ ରାଣୀ କୌଶଲ୍ୟା । ପ୍ରଭୁ ପ୍ରକଟ ହେଲେ ଶ୍ରୀରାମ ରୂପେ ।

ଅପୁତ୍ରିକା ଥିବା ଦଶରଥ ଋଷ୍ୟଶୃଙ୍ଗଙ୍କ ପୌରୋହିତ୍ୟରେ ପୁତ୍ରେଷ୍ଟି ଯଜ୍ଞ ଅଯୋଧ୍ୟାରେ ଆୟୋଜନ କଲେ । ଯଜ୍ଞକୁଣ୍ଡରେ ପ୍ରଜ୍ୱଳିତ ଅଗ୍ନିରେ ପୂର୍ଣ୍ଣାହୂତି ଦେବା ମାତ୍ରେ ସେହି ଯଜ୍ଞକୁଣ୍ଡରେ ପବିତ୍ର ଅଗ୍ନି ମଧ୍ୟରୁ ଏକ ଦିବ୍ୟ ପୁରୁଷ ପାୟସ ପୂର୍ଣ୍ଣ ଏକ ସ୍ୱର୍ଣ୍ଣ ପାତ୍ର ଧାରଣ କରି ଆବିର୍ଭୂତ ହେଲେ । ସେ ଦଶରଥଙ୍କୁ ସେହି ପାୟସ ଅନ୍ନ ପ୍ରଦାନ କରି ନିଜର ପତ୍ନୀଙ୍କୁ ଖୁଆଇବାକୁ କହିଥିଲେ । 'ଏହାଦ୍ୱାରା ଆପଣଙ୍କ ଅଭୀଷ୍ଟ ସିଦ୍ଧ ହେବ ଏବଂ ଆପଣଙ୍କର ପୁତ୍ର ସନ୍ତାନ ଜାତ ହେବେ ।' ଏହା – କହି ଅନ୍ତର୍ଦ୍ଧାନ ହୋଇଗଲେ ।

ମହାରାଜ ଦଶରଥ ସେହି ପାୟସ ଅନ୍ନକୁ ଅର୍ଦ୍ଧେକ ରାଣୀ କୌଶଲ୍ୟାଙ୍କୁ ଏବଂ ଅବଶିଷ୍ଟ ଅର୍ଦ୍ଧେକକୁ ଦୁଇ ଭାଗ କରି ଏକ ଭାଗ ରାଣୀ ସୁମିତ୍ରାଙ୍କୁ ଏବଂ ଅବଶିଷ୍ଟ ଭାଗକୁ ଦୁଇଭାଗ କରି ରାଣୀ କୈକେୟୀ ଓ ରାଣୀ ସୁମିତ୍ରାଙ୍କୁ ପ୍ରଦାନ କଲେ । କୌଶଲ୍ୟା, କୈକେୟୀ ଓ ସୁମିତ୍ରା ଶ୍ରଦ୍ଧା ଓ ଭକ୍ତି ସହକାରେ ସ୍ୱାମୀଙ୍କଠାରୁ ଦେବ ଆଶୀର୍ବାଦ

ନେଇ ପାୟସ ଅନ୍ନ ଗ୍ରହଣ କରିବା ପରେ ସେମାନଙ୍କର ଗର୍ଭ ସଂଚାର ହେଲା । ପରେ କୌଶଲ୍ୟାଙ୍କ ଗର୍ଭରୁ ରାମ, କୈକେୟୀଙ୍କ ଗର୍ଭରୁ ଭରତ ଓ ସୁମିତ୍ରାଙ୍କ ଗର୍ଭରୁ ଲକ୍ଷ୍ମଣ, ଶତୃଘ୍ନ ଜାତ ହେଲେ ।

ପୁରୁଷୋତ୍ତମ ମଧ୍ୟାହ୍ନ କାଳରେ ଜନ୍ମଲାଭ କରିଥିଲେ । ଜନ୍ମ ପରେ ପରେ କୁଳଗୁରୁ ବଶିଷ୍ଠ ତାଙ୍କର ନାମକରଣ କରି 'ରାମ' ନାମ ଦେଇଥିଲେ । ରାମ ଶବ୍ଦର 'ରା' ଅର୍ଥ 'ଓଁ ନମୋ ନାରାୟଣାଃ' ଏବଂ 'ମ'ର ଅର୍ଥ 'ଓଁ ନମୋ ଶିବାୟଃ ବୋଲି ଅର୍ଥ କରାଯାଏ । ଏହି ରାମ ଉଭୟ ହରିହରଙ୍କ ମିଶ୍ରିତ ରୂପ ।

ରାମଙ୍କ ନାମ ରାମଚନ୍ଦ୍ର ହେବା ପଛରେ କଥିତ ଅଛି, ରାମ ମଧ୍ୟାହ୍ନରେ ଜନ୍ମଗ୍ରହଣ କରିବା ପରେ ନିଶାର୍ଦ୍ଧ ଚନ୍ଦ୍ର ତାଙ୍କୁ ସାକ୍ଷାତ୍ କରିବା ପାଇଁ ଆସିଲେ । ହଠାତ୍ ଚନ୍ଦ୍ରଙ୍କ ମୁଖରେ ବିଷାଦର ଛାୟା ଖେଳିଗଲା । ରାମ ଏହା ଜାଣିପାରି ଚନ୍ଦ୍ରଙ୍କୁ ବିଷାଦର କାରଣ ପଚାରିଲେ । ଉତ୍ତରରେ ଚନ୍ଦ୍ର କହିଲେ –ସମସ୍ତେ କହିବେ ସୂର୍ଯ୍ୟଦେବ ରାମଙ୍କ ପୂର୍ବପୁରୁଷ ଥିବାରୁ ସେ ଦିନରେ ଜନ୍ମ ନେଲେ । ପାପୀମାନଙ୍କୁ ବିନାଶ କରିବା ପାଇଁ ଆପଣ ରାତ୍ରିରେ ଜନ୍ମ ନେବା ଉଚିତ ଥିଲା ।

ଉତ୍ତରରେ ରାମଚନ୍ଦ୍ର ନିର୍ଭର ପ୍ରତିଶ୍ରୁତି ଦେଲେ ଯେ ସେ ଆଗାମୀ ଜନ୍ମରେ କୃଷ୍ଣ ଅବତାରରେ ରାତ୍ରିରେ ଜନ୍ମ ହେବେ । ଏତେଦିନ ଅପେକ୍ଷା କରିବା ବଡ଼ କଷ୍ଟ ବୋଲି ଚନ୍ଦ୍ର ଦୁଃଖର ସହ କହିବାରୁ ରାମ କହିଲେ ତୁମେ ବ୍ୟସ୍ତ ହୁଅ ନାହିଁ । ଏ ଜନ୍ମରେ ମୋ ନାମ ସହ ତୁମ ନାମକୁ ଯୋଗ କରିଦେବି । ଏହାପରେ ରାମ ରାମଚନ୍ଦ୍ର ଭାବେ ପରିଚିତ ହେଲେ ।

ବାଲ୍ମିକୀ ରାମାୟଣରେ ଅଛି, ଚୈତ୍ରମାସ ନବମୀ ତିଥି ପୁନର୍ବସୁ ନକ୍ଷତ୍ରରେ ରବି ମେଷ ରାଶିରେ, ମଙ୍ଗଳ ମକର ରାଶିରେ, ଶନି ତୁଳା ରାଶିରେ, ବୃହସ୍ପତି ଓ ଚନ୍ଦ୍ର କର୍କଟ ରାଶିରେ ଏବଂ ମୀନ ରାଶିରେ ଅବସ୍ଥାନ କରୁଥିବା ସମୟରେ କର୍କଟ ଲଗ୍ନରେ ପରମ ସୌଭାଗ୍ୟବତୀ କୌଶଲ୍ୟାଙ୍କ ଗର୍ଭରୁ ଦିବ୍ୟଗୁଣ ଯୁକ୍ତ ସର୍ବଲୋକ ପ୍ରଣମ୍ୟ ଜଗତର ନାଥ ପ୍ରଭୁ ରାମ ପ୍ରକଟିତ ହେଲେ । ନବଜାତ ରାମ ଥିଲେ ଭଗବାନ ବିଷ୍ଣୁଙ୍କ ଅର୍ଦ୍ଧାଂଶ ସମ୍ଭୂତ । ରାମଚନ୍ଦ୍ରଙ୍କର ନେତ୍ର ପ୍ରାନ୍ତ ଲୋହିତ, ଓଷ୍ଠପୁଟ ରକ୍ତବର୍ଣ୍ଣ, କଣ୍ଠସ୍ୱର ଦୁନ୍ଦୁଭି ଶବ୍ଦ ପରି ଗମ୍ଭୀର ଥିଲା । ଦେବରାଜ ଇନ୍ଦ୍ରଙ୍କୁ ଲାଭ କରି ଦେବମାତା ଅଦିତି ଯେପରି ଶୋଭିତା ହୋଇଥିଲେ, ରାମଙ୍କୁ ଲାଭ କରି କୌଶଲ୍ୟା ଅନୁରୂପ ଭାବରେ ଶୋଭା ପାଇଲେ । ରାମ ଥିଲେ ସର୍ବଗୁଣସମ୍ପନ୍ନ, ପ୍ରବଳ ପରାକ୍ରମଶାଳୀ, ଧର୍ମଜ୍ଞ, ବିନୟୀ, କୃତଜ୍ଞ, ସତ୍ୟାନୁରାଗୀ, ସତ୍‌ଚରିତ୍ର, ସର୍ବଶାସ୍ତ୍ରଦର୍ଶୀ, ସର୍ବଜନପ୍ରିୟ, ଜିତେନ୍ଦ୍ରିୟ ଓ ସମୁଦ୍ର ପରି ଗମ୍ଭୀର ।

ଏହି ନବମୀ ଦିନ ଘରେ ଶ୍ରୀରାମ, ସୀତା, ଲକ୍ଷ୍ମଣ ଓ ହନୁମାନଙ୍କୁ ବିଶେଷ ପୂଜାଅର୍ଚ୍ଚନା କରାଯାଏ । ଅଶୋକ ପୁଷ୍ପ, ତୁଳସୀ, କୁଶ, ଘୃତପକ୍ୱଦ୍ରବ୍ୟ ଓ ଫଳମୂଳରେ ପୂଜାକାର୍ଯ୍ୟ ସମ୍ପନ୍ନ ହୁଏ । ରାମ ମନ୍ଦିରଗୁଡ଼ିକରେ ବିଶେଷ ଆଡ଼ମ୍ବର ସହକାରେ ଶ୍ରୀରାମ ଜନ୍ମ ଉତ୍ସବ ପାଳନ କରାଯାଏ । ପୁରୀରେ ଏହି ଦିନ ଶ୍ରୀଜଗନ୍ନାଥ ରଘୁନାଥ ବେଶ ଧାରଣ କରିଥାନ୍ତି । ଓଡ଼ଗାଁସ୍ଥିତ ରାମମନ୍ଦିରରେ ବଡ଼ ଜାକଜକମରେ ଏହି ପର୍ବ ପାଳନ କରାଯାଏ ।

**ଶ୍ରୀରାମ ଓ ଓଡ଼ିଶା**

ପିତୃସତ୍ୟ ରକ୍ଷା କରିବା ପାଇଁ ରାମଚନ୍ଦ୍ର ଚଉଦ ବର୍ଷ ବନବାସ କରିବା ସମୟରେ କୋରାପୁଟର ମାଳ ଅଞ୍ଚଳରେ କିଛି ଦିନ ଅତିବାହିତ କରିଥିଲେ । ଦଣ୍ଡକାରଣ୍ୟ, ପଞ୍ଚବଟୀ, ଚିତ୍ରକୂଟ, ରାମଗିରି, ସୀତାକୁଣ୍ଡ ଓ ରାମତୀର୍ଥ ଆଦିବାସୀଙ୍କ ହୃଦୟରେ ଉଜ୍ଜୀବିତ ହୋଇ ରହିଛି । ଫୁଲବାଣୀର ଭୂଷ୍ୟମୂକ ପର୍ବତରେ ରାମଚନ୍ଦ୍ର ସୁଗ୍ରୀବ ସହ ମିତ୍ରତା କରିବାର କଥିତ ଅଛି । ସେଠାରେ ପମ୍ପା ସରୋବର ପାଖରେ ଶବରୀଠାରୁ ରାମଚନ୍ଦ୍ର ଅଇଁଠା ଫଳ ଖାଇଥିବା ପ୍ରବାଦ ଅଛି । କେନ୍ଦୁଝରର ସୀତାବିଞ୍ଜ, ଢେଙ୍କାନାଳର ସପ୍ତଶଯ୍ୟା, ସୋନପୁର ସହର, ପୁରୀର ରାମଚଣ୍ଡି ମନ୍ଦିର ଓ ଶ୍ରୀଲୋକନାଥ ଏବଂ ଏକାମ୍ର କ୍ଷେତ୍ରରେ ରାମେଶ୍ୱର ମନ୍ଦିର ଅଦ୍ୟାବଧି ରାମଙ୍କ ସ୍ମୃତି ବହନ କରେ ।

କୈବଲ୍ୟ, ଦତ୍ତତୋଟା, ଜିଲ୍ଲା– ପୁରୀ

# ମହାମାରୀ ଓ ମିଥ୍ୟା ପ୍ରଚାର

ଗଙ୍ଗାଧର ସାହୁ

ଗତ ଦୁଇ ମାସ ଧରି ପୃଥିବୀରେ ଯେଉଁ ଶବ୍ଦଟି ବେଶି ବ୍ୟବହୃତ ହେଉଛି ତାହା ହେଲା କରୋନା । ପୃଥିବୀର ସମସ୍ତ ଟି.ଭି ଚାନେଲ, ଖବରକାଗଜ, ଇଣ୍ଟରନେଟ୍ ଓ ସାମାଜିକ ଗଣମାଧ୍ୟମରେ ଯେଉଁ ଶବ୍ଦଟି ବେଶି ବ୍ୟବହୃତ ତାହା ମଧ୍ୟ କରୋନା । କରୋନା, କରୋନା, କରୋନା । ଶୁଣି ଶୁଣି, ପଢ଼ି ପଢ଼ି, ଦେଖି ଦେଖି ମଣିଷ ପାଗଳ ହୋଇଗଲାଣି । ପାଠକମାନେ ପ୍ରତ୍ୟେକ ଦିନ ମଧ୍ୟ କରୋନା ଉପରେ ଅନେକ ପ୍ରସ୍ତ ଓ ସମ୍ବାଦ ପଢ଼ି ପଢ଼ି ବ୍ୟସ୍ତ ବିବ୍ରତ ଓ ଆତଙ୍କିତ । ଆମେ କିନ୍ତୁ ଏଠାରେ ଆଉ ଗୋଟିଏ ବିଷୟରେ ଆଲୋଚନା କରିବା ତାହା ହେଲା ମିସ୍ ଇନ୍‌ଫୋଡେମିକ୍ସ । ଏହା ଏକ ଇଂରାଜୀ ଶବ୍ଦ । ୨୦୧୮ ମସିହାରେ ଏହା ଶବ୍ଦକୋଷରେ ସ୍ଥାନ ପାଇଲା । ଏହାକୁ ସନ୍ଧିବିଚ୍ଛେଦ କଲେ ଏହାର ଅର୍ଥ ଯାହା ବାହାରେ ତାହା ହେଲା ମିସ୍‌ଇନ୍‌ଫର୍‌ମେସନ୍ ଓ ଏପିଡେମିକ୍ସ ଅର୍ଥାତ ମିଥ୍ୟା ପ୍ରଚାରଜନିତ ମହାମାରୀ । ଏବେ ଦେଖିବା ମହାମାରୀ କ'ଣ ? ମହାମାରୀ ଏକ ସଂକ୍ରାମକ ରୋଗ । ଯେମିତି କି ହଇଜା, ପ୍ଲେଗ୍, ଇବୋଲା, କାମଳ ଜ୍ୱର, ମେନିଙ୍ଗଜାଇଟିସ୍, ଏଡ୍‌ସ, ସ୍ୱାଇନ୍ ଫ୍ଲୁ ଇତ୍ୟାଦି ଇତ୍ୟାଦି । ମହାମାରୀର ଚାରିଗୋଟି କାୟା ଥାଏ । ଏହା ଯେଉଁଠି ପ୍ରଥମେ ଜନ୍ମ ନେଇ ବିସ୍ତାରିତ ହୁଏ ଏହାକୁ ଏକ ବ୍ୟାଧିଗତ ପ୍ରକୋପ ବା ଆଉଟ୍‌ବ୍ରେକ୍ କୁହାଯାଏ । ଏହା ଯେତେବେଳେ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ବା ନିର୍ଦ୍ଦିଷ୍ଟ ଗୋଷ୍ଠିକୁ ବ୍ୟାପୀ ଯାଏ ତାହା ମହାମାରୀ ରୂପ ଧାରଣ କରେ । ଏହାକୁ ଏପିଡେମିକ୍ କୁହାଯାଏ । ମହାମାରୀ ଯେତେବେଳେ ଗୋଟିଏ ପ୍ରଦେଶ ଓ ଦେଶକୁ ଗ୍ରାସ କରେ ଏହାକୁ ସ୍ଥାନୀୟ ମହାମାରୀ ବା ଏଣ୍ଡେମିକ୍ କୁହାଯାଏ । ପୁଣି ଯଦି ଏହା ଦେଶ ବାହାରକୁ ଯାଇ ଉପମହାଦେଶ ବା ବିଶ୍ୱକୁ ଗ୍ରାସ କରେ ଏହାକୁ ବିଶ୍ୱମାରୀ ବା ସର୍ବବ୍ୟାପୀ ମହାମାରୀ ବା ପାଣ୍ଡେମିକ୍ କୁହାଯାଏ । ଗୋଟିଏ ଉଦାହରଣ ନେଇ ବୁଝାଇଲେ ସହଜ



ହେବ । କରୋନା ବା କୋଭିଡ୍–୧୯ ଚାଇନାର ଉହାନ ସହରରେ ଆଉଟ୍‌ବ୍ରେକ୍ କଲା, ତା'ପରେ ହୁବେଇ ପ୍ରଦେଶକୁ ବ୍ୟାପୀ ଏପିଡେମିକ୍‌ର ରୂପ ନେଲା । ତା' ପରେ ଅନ୍ୟ ପ୍ରଦେଶକୁ ବ୍ୟାପୀ ଏଣ୍ଡେମିକ୍ ରୂପ ଧାରଣ କଲା । ଶେଷରେ ଏହା ଚାଇନା ବର୍ଡର ଅତିକ୍ରମ କରି ୨୧୦ଟି ଦେଶକୁ କରାୟତ କରିଛି । ଏହାକୁ ବିଶ୍ୱମାରୀ ବା ପାଣ୍ଡେମିକ୍ କୁହାଯାଉଛି । ତେବେ ଏକବିଂଶ ଶତାବ୍ଦୀର ପୃଥିବୀରେ ମହାମାରୀ ବା ବିଶ୍ୱମାରୀର ଗତିଠାରୁ ମିଥ୍ୟା ସମ୍ବାଦମାରୀ ବା ମିସ୍‌ଇନ୍‌ଫୋଡେମିକ୍ସର ଗତି ଅଧିକ । ଚିକିତ୍ସା ବିଜ୍ଞାନର ଅଭ୍ୟୁଦୟ ଫଳରେ ଆମକୁ ପ୍ରକୃତ ଜ୍ଞାନ ଆସୁଛି ଏବଂ

ସତ୍ୟକଥା ପାଇଁ ବିଳମ୍ବ ହେଉଛି । ଯେମିତି କି ଭାଇରସ୍ ବାବଦରେ କୌଣସି ତଥ୍ୟ ନଥିବା ସମୟରେ ପ୍ରଥମେ ମାୟେସ୍‌ମା ଉପରେ ବିଶ୍ୱାସ କରାଯାଉଥିଲା । ଏହି ମାୟେସ୍‌ମେଟିକ୍ ଥିଓରୀ ଅନୁଯାୟୀ ବ୍ୟାଧିର କାରଣ ପଚାସଢାରୁ ନିର୍ଗତ ବାୟୁ । ସେଥିପାଇଁ ପ୍ରଖ୍ୟାତ ସେବିକା ଫ୍ଲୋରେନ୍ସ ନାଇଟିଙ୍ଗଏଲ ଘର, ଡାକ୍ତରଖାନା, ପରିବେଶ ସଫା ଉପରେ ନଜର ରଖୁଥିଲେ । ତା'ପରେ ଆସିଲା ଜୀବାଣୁ ତତ୍ତ୍ୱ ବା ଯର୍ମ ଥିଓରୀ । ଏହି ଥିଓରୀ ଅନୁଯାୟୀ ସୂକ୍ଷ୍ମ ଜୀବାଣୁମାନେ ରୋଗର କାରଣ । ଏହାର ପ୍ରଥମ ଓ ଶ୍ରେଷ୍ଠ ଗବେଷକ ଲୁଇ ପାଶ୍ଚରଙ୍କ ପ୍ରତି ମଣିଷ ସମାଜ କୃତଜ୍ଞ ହୋଇ ରହିବ । ଶେଷରେ ଚିକିତ୍ସକ ଓ ଗବେଷକମାନେ ଜାଣିଲେ ଯେ କିଛି ରୋଗ ବା ବ୍ୟାଧି ସ୍ପର୍ଶରେ ମଧ୍ୟ ସଂକ୍ରମିତ ହୁଏ । ଏହାକୁ କାଜିୟନ୍ ଥ୍ୟୋରୀ ବୋଲି କୁହାଗଲା । ତେଣୁ ବିଜ୍ଞାନ ଆଗେଇ ଚାଲିଛି । ଏବେ କରୋନାର କାରଣ ଓ ନିରାକରଣ ପାଇଁ ଚିକିତ୍ସା ବିଜ୍ଞାନର ଗବେଷଣା ଦ୍ରୁତ ଗତିରେ ଆଗେଇ ଚାଲିଛି । କିଛି ଦିନ ମଧ୍ୟରେ ନିଶ୍ଚୟ ଟୀକା ଆସିବ । କିନ୍ତୁ ଅପରପକ୍ଷରେ ଗଣମାଧ୍ୟମ, ସାମାଜିକ ଗଣମାଧ୍ୟମ, ଲୋକକଥା, ଅପପ୍ରଚାର, ମିଥ୍ୟାପ୍ରଚାର, ତୁଣ୍ଡ ବାଇଦ ଯଥା ଗୁଗୁଲ୍, ୟୁଟ୍ୟୁବ୍, ଫେସ୍‌ବୁକ୍, ହ୍ୱାଟ୍ସଆପ୍, ଟ୍ୱିଟର ଇତ୍ୟାଦିରେ ଅନେକ ଖବର ଏତେ ବେଗରେ ପ୍ରଚାରିତ ହେଉଛି ଯେ କରେନା ଭାଇରସ୍‌ଠାରୁ ତା' ଖବର ବା ମିଥ୍ୟା ଖବର ବହୁତ ଆଗରେ । ଏହାଦ୍ୱାରା ରୋଗର ନିଦାନ ବଦଳରେ ରୋଗର ସଂକ୍ରମଣ ବଢୁଛି । ଆପଣମାନେ ଲକ୍ଷ୍ୟ କରିଥିବେ ଭାରତବର୍ଷରେ ହଇଜା ବା କଲେରାରେ କାରଣ କୌଣସି ଗ୍ରାମ୍ୟ ଦେବାଦେବୀର ପ୍ରକୋପ ଭାବି ପଣା ଦିଆଯାଉଥିଲା । କୁକୁଡା ବଳି, ଛେଳି ବଳି, ମଙ୍ଗଳା ପୂଜା କରାଯାଉଥିଲା । କୁଷ୍ଠରୋଗ ଏବଂ ଏଡ୍‌ସ ରୋଗ ଛୁଇଁଲେ ବ୍ୟାପେ ବୋଲି ଲୋକମାନେ ରୋଗୀକୁ ଛୁଇଁବାକୁ ଘୃଣା କରନ୍ତି । ୨୦୧୩ ମସିହାରେ ପଶ୍ଚିମ ଆଫ୍ରିକାରେ ଇବୋଲା ଭୂତାଣୁକୁ ମୁକାବିଲା ପାଇଁ ଲବଣଯୁକ୍ତ ଗରମ ପାଣିରେ ଗାଧୋଇଲେ ଏହି ରୋଗରୁ ମୁକ୍ତି ମିଳିବ ବୋଲି ପ୍ରଚାର ଚାଲୁଥିଲା । ଏବେ କରେନାକୁ ନେଇ ଭାରତବର୍ଷରେ ଯେଉଁସବୁ ଗୁଜବମାନ ପ୍ରଚାରିତ ହେଉଛି, ସେଗୁଡିକ ମଧ୍ୟ ଆମର ଜାଣିବା ଦରକାର । ସାମାଜିକ ଗଣମାଧ୍ୟମରେ ଭାଇରାଲ ପ୍ରଚାର ଚାଲିଛି ଯେ ହୋମଯଜ୍ଞ ଦ୍ୱାରା କରୋନାରୁ ମୁକ୍ତି । ସେଥିପାଇଁ କର୍ଣ୍ଣାଟକ, ମଧ୍ୟପ୍ରଦେଶ ପରି ଅନେକ ଜାଗାରେ ପୂଜାର ଆୟୋଜନ ଚାଲିଲା । ଅନେକ ମୌଲାନା ପ୍ରଚାର କଲେ ଯେ ମସ୍‌ଜିଦ୍ ଆଲ୍ଲାଙ୍କ ଜାଗା, ସେଠାକୁ କରୋନା ଯାଇପାରିବ ନାହିଁ ଏବଂ ସଂକ୍ରମଣ ସେଠାରେ ଅଧିକ ହେଲା । କେହି କେହି ପ୍ରଚାର କଲେ ଗାଈମୂତ୍ର, ଗୋବର, ଲେମ୍ବୁ, ହଳଦି, ଅଦା, ତୁଳସୀପତ୍ର, ନିମ୍ବପତ୍ରରେ ଏହାର ଉପଚାର ଅଛି । କେହି କେହି ପ୍ରଚାର କଲେ ଯେ, ଭାରତବର୍ଷରେ ଉଷ୍ମ ଜଳବାୟୁ ଓ ଭାରତୀୟଙ୍କ ରୋଗ ପ୍ରତିରୋଧକ ଶକ୍ତି ଅଧିକ ଯୋଗୁଁ କରୋନା ଭାରତରେ କିଛି କରିପାରିବ ନାହିଁ ।

କୌଣସି ଆଧାର ବା ପ୍ରମାଣ ନ ଥାଇ କରୋନା ଭାଇରସ୍ ଚାଇନାର ଉହାନ ସହରର ଭୂତାଣୁ ଗବେଷଣା କେନ୍ଦ୍ରରୁ ବାହାରିଛି, ଏହା ଏକ ଜୈବିକ ଅସ୍ତ୍ର, ଚାଇନାର ଏହା ବିଶ୍ୱ ଅର୍ଥନୀତିକୁ ନିଜ କବଳରେ ରଖିବା ପାଇଁ ଏକ ପ୍ରୟାସ, ଏଭଳି କିଛି ସମ୍ବାଦ ଘୂରି ବୁଲିଲା । ଚାଇନା ଦେଶରେ ହ୍ୱାଟ୍‌ସଆପ୍‌ଠାରୁ ଉଇଚାଟ୍‌ର ପ୍ରଚଳନ ବହୁତ ଅଧିକ । ଏହି ସାମାଜିକ ଗଣମାଧ୍ୟମ ଆପ୍‌ରେ ଏକ ସୂଚନା ଘୂରି ବୁଲିଲା ଯେ ଜଣେ କରୋନା ରୋଗୀର ଆଖିକୁ ଚାହିଁଲେ ଅନ୍ୟ ଜଣେ କରୋନା ସଂକ୍ରମିତ ହୋଇଯିବ । ଆପଣମାନେ ଜାଣି ଆଶ୍ଚର୍ଯ୍ୟ ବା ଦୁଃଖିତ ହେବେ ଯେ ଚାଇନାର ଅନ୍ୟ ଏକ ଲୋକପ୍ରିୟ ଓ ବହୁଳ ବ୍ୟବହୃତ ସାମାଜିକ ଗଣମାଧ୍ୟମ ଆପ୍ ଟିକ୍‌ଟକ୍‌ରେ ଏକ ଖବର ଭାଇରାଲ୍ ହୋଇ ଘୂରି ବୁଲିଲା ଯେ ଆମେରିକାର ବିଲ୍ ଓ ମିଲିଣ୍ଡା ଗେଟ୍‌ସ ଫାଉଣ୍ଡେସନ୍‌ର କୋଭିଡ-୧୯ ଆଉଟବ୍ରେକ୍ ପଛରେ ହାତ ଅଛି । ଯେଉଁ ସଂସ୍ଥା ବିଶ୍ୱରୁ ଅନେକ ବ୍ୟାଧି ଦୂର କରିବାରେ କୋଟି କୋଟି ଟଙ୍କା ଦାନ ଦିଏ ସେ ସଂସ୍ଥାକୁ ମଧ୍ୟ ଚାଇନା ସାମାଜିକ ଗଣମାଧ୍ୟମ ନିନ୍ଦା କରିବାକୁ ପଛାଇଲା ନାହିଁ । ଚାଇନାର ଉଇଚାଟ୍ ସାଇଟ୍‌ରେ ରିପୋର୍ଟ ପ୍ରକାଶ ପାଇଲା ଭାରତବର୍ଷର ଦକ୍ଷିଣାଞ୍ଚଳରେ ଏକ ଦିନରେ ୩୦୦୦ ଲୋକ କରୋନା ଆକ୍ରାନ୍ତ । ଭାରତ ଚାଇନାକୁ ସହାୟତାର ହାତ ବଢାଇଲା ।

ଯାହାକି ପୂରା ଗୁଜବ । ହ୍ୱାଟ୍ସଆପ୍‌ରେ ଘୂରି ବୁଲିଲା ଯେ କିଛି ସଂପ୍ରଦାୟର ଫଳ ଓ ପନିପରିବା ବିକାଳି ଛେପ ଲଗାଇ ଫଳ ଓ ପରିବା ବିକୁଛନ୍ତି, ଯାହାର ଉଦ୍ଦେଶ୍ୟ କରୋନା ସଂକ୍ରମଣକୁ ବଢାଇବା । କିନ୍ତୁ ପରେ ଦେଖାଗଲା ଏହା ବହୁ ପୁରୁଣା ହ୍ୱାଟ୍ସଆପ୍ ମେସେଜ୍ ଓ ଏହାର କୌଣସି ସତ୍ୟତା ନାହିଁ । କିଛି ମନଗଢା ସମ୍ବାଦ ଭାଇରାଲ୍ କରାଗଲା ଯେ ମଦ ବା ଆଲ୍‌କହଲ୍ ସଂସ୍ପର୍ଶରେ କରୋନା ଭୂତାଣୁ ଆସିଲେ ମରିଯିବ ତେଣୁ ମଦୁଆଙ୍କ ଖୁସି କହିଲେ ନ ସରେ । ପ୍ରଧାନମନ୍ତ୍ରୀଙ୍କ ଗତ ମାର୍ଚ୍ଚ ୨୨ ତାରିଖ, ଥାଳି ଇତ୍ୟାଦି ବଜାଇ କରୋନା ଯୁଦ୍ଧରେ ନିୟୋଜିତ ଡାକ୍ତର, ନର୍ସ ଓ ଅନ୍ୟାନ୍ୟ ସ୍ୱାସ୍ଥ୍ୟକର୍ମୀଙ୍କୁ ଉତ୍ସାହିତ କରିବା ଆହ୍ୱାନ କିଛି ଲୋକଙ୍କୁ ଭିନ୍ନ ସମ୍ବାଦ ପଠାଇବାକୁ ଖୋରାକ ଯୋଗାଇଲା । କିଛି ପଣ୍ଡିତ, ଜ୍ୟୋତିଷ ଶାସ୍ତ୍ରୀ କହିଲେ ସେଦିନ ମାର୍ଚ୍ଚ ମାସ ୨୨ ତାରିଖ ୫ ଘଟିକା ସମୟରେ ଚନ୍ଦ୍ରଙ୍କ ଉପସ୍ଥିତି ଏପରି ଜାଗାରେ ଅଛି ଯେ ଶହେ ତିରିଶ କୋଟି ଲୋକ ଏକାଥରକେ, ଥାଳି, ଶଙ୍ଖ ନାଦ କଲେ ଯେଉଁ ସ୍ପନ୍ଦନ ବାହାରିବ ତାହା କରୋନାର କାଳ ହେବ ଓ କରୋନା ଭୂତାଣୁ ଲୋପ ପାଇଯିବ । ଏହାଦ୍ୱାରା ଲକ୍ଷ ଲକ୍ଷ ଲୋକ ଅବୈଜ୍ଞାନିକ ପଥରେ ଯାଇ ସାମାଜିକ ଦୂରତା ନିୟମକୁ ସଂପୂର୍ଣ୍ଣ ଉଲ୍ଲଙ୍ଘନ କଲେ ଓ ରାସ୍ତାକୁ ଓହ୍ଲାଇ ଆସି ପ୍ରୋସେସନ୍‌ରେ ବାହାରିଗଲେ । ଗଣମାଧ୍ୟମରେ ଏହା ମଧ୍ୟ ପ୍ରଚାର ହେଲା ଯେ ହୋମିଓପାଥି ଔଷଧ ଆର୍‌ସେନିକମ୍ ଆଲବମ୍-୩୦ ଏବଂ କ୍ଲୋରୋକୁଇନ୍ ଖାଇଲେ କରୋନାରୁ ମୁକ୍ତି । କେହି କେହି କିଛି ଭାଇରାଲ୍ ହ୍ୱାଟସ୍‌ଆପ୍ ଭିଡିଓ ଦେଖି ମନେ ମନେ ସ୍ଥିର କରି ନେଲେ ଯେ କରୋନାର ଉତ୍ପତ୍ତି ଚାଇନା ଲୋକଙ୍କ ଆମିଷ ଭକ୍ଷଣ ଶୈଳୀରୁ । ତେଣୁ ସେମାନେ ଶାକାହାରୀ ହୋଇଗଲେ । ଏହିପରି ଗୁଜବ, ମିଥ୍ୟାପ୍ରଚାର ବା ମିଥ୍ୟାମାରୀରୁ ସାଧାରଣ ଲୋକଙ୍କୁ ରକ୍ଷା କରିବା ପାଇଁ ଭାରତ ସରକାର ଓ ଓଡିଶା ସରକାରଙ୍କ ପକ୍ଷରୁ ପ୍ରତିଦିନ ପ୍ରେସ୍ ରିଲିଜ୍‌ର ବ୍ୟବସ୍ଥା କରାଯାଇଛି । ଏହା ଏକ ସର୍ବାଦୃତ ସ୍ୱାଗତଯୋଗ୍ୟ ପଦକ୍ଷେପ । ଏହା ଲକ୍ଷ୍ୟ କରାଯାଇଛି ଯେ ଭାରତ ସରକାରଙ୍କ ଯୁଗ୍ମ ସଚିବ ଲବ ଅଗ୍ରୱାଲ ଓ ଓଡିଶା ସରକାରଙ୍କ ମୁଖ୍ୟ ମୁଖପାତ୍ର ସୁବ୍ରତ ବାଗ୍‌ଚିଙ୍କ ତଥ୍ୟ ପରିବେଷଣ ଅତି ରୋଚକପୂର୍ଣ୍ଣ ହେଉଥିବାରୁ ଟି.ଭି ଚାନେଲର ଧାରାବାହିକଠାରୁ ଏହି ଖବର ପ୍ରଦାନ ସିରିୟଲର ଦର୍ଶକ ସଂଖ୍ୟା ବହୁ ମାତ୍ରାରେ ବଢି ଯାଇଛି । ଏହାପରେ ମଧ୍ୟ ଯେଉଁମାନେ ଏହି ବିଶ୍ୱମାରୀ ଉପରେ ସଠିକ୍ ତଥ୍ୟ ପାଇବାକୁ ଇଚ୍ଛୁକ ସେମାନେ ଆମେରିକାର ଜନ୍‌ସ ହପ୍‌କିନ୍‌ସ ବିଶ୍ୱବିଦ୍ୟାଳୟ ହାବାର୍ଡ ହେଲ୍‌ଥ ପବ୍ଲିସିଙ୍ଗ୍, ଟାଟା ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଫଣ୍ଡାମେଲ ରିସର୍ଚ୍ଚ ପରି ଖ୍ୟାତିସମ୍ପନ୍ନ ସଂସ୍ଥାମାନଙ୍କ ୱେବ୍‌ସାଇଟ୍‌କୁ ଯାଇ ତଥ୍ୟ ପାଆନ୍ତୁ । ଭାରତ ସରକାରଙ୍କ ଦ୍ୱାରା ଅନୁମୋଦିତ 'ଆରୋଗ୍ୟ ସେତୁ' ଓଡିଶା ସରକାରଙ୍କ ଦ୍ୱାରା ଓଡିଶା ଗଭର୍ଣ୍ଣମେଣ୍ଟ କୋଭିଡ୍ ଡେସ୍କ, ତେଲେଙ୍ଗାନା କୋଭିଡ୍-୧୯ ଟ୍ରାକର ଓ ବିଭିନ୍ନ ପ୍ରଦେଶ ସରକାରଙ୍କ ଅନ୍‌ଲାଇନ୍ ଟ୍ରାକିଙ୍ଗ୍ ସିଷ୍ଟମ୍ ବହୁତ ଭଲ କାମ କରୁଛି । ଏହି ମହାମାରୀର ମୁକାବିଲା ପାଇଁ ଗାଁ ବଇଦ (କ୍ୱାକ୍) କଥାରେ ବିଶ୍ୱାସ ନ କରି ବିଶେଷଜ୍ଞଙ୍କ ପରାମର୍ଶ ନିଅନ୍ତୁ । ବେସରକାରୀ କଥାକୁ ତ୍ୟାଗ କରି ସରକାରୀ ତଥ୍ୟ ଉପରେ କାମ କରନ୍ତୁ ଓ ବିଶ୍ୱମାରୀକୁ ବିଶ୍ୱରୁ ବିଦାୟ କରନ୍ତୁ ।

ନିର୍ଦ୍ଦେଶକ
ଏସ୍.ସି.ଇ.ଆର୍.ଟି, ଭୁବନେଶ୍ୱର



# ଗଜପତି ମଉଡ଼ମଣି କପିଳେନ୍ଦ୍ରଦେବ

ଇନ୍ଦ୍ରମଣି ଜେନା

ଜୀବନର ଶେଷ କିୟଦାଂଶ ଆୟୁ ବାନପ୍ରସ୍ଥ ଭାବରେ ବିତାଇବାକୁ ଶାସ୍ତ୍ର ସୂଚନା ଦିଏ । କିନ୍ତୁ ବ୍ୟତିକ୍ରମ ଘଟିଥିଲା ଶକ୍ତ ଦିଗ୍‌ବିଜୟୀ ଗଜପତି ଗୌଡେଶ୍ୱର ନବକୋଟି କର୍ଣ୍ଣାଟ କଳବର୍ଗେଶ୍ୱର କପିଳେନ୍ଦ୍ରଦେବଙ୍କ ୭୮ ବର୍ଷ ବୟସରେ । ନିଜର ଅର୍ଜିତ ବିଶାଳ ଆୟତନ ଓଡିଶାର ସୀମା ଗଙ୍ଗାରୁ ଗୋଦାବରୀ ଟପି ସେତୁବନ୍ଧ ସ୍ପର୍ଶ କରୁଛି, ଓଡିଆ ଜନ ଜୀବନର ମାନ ବଢ଼ି ଓଡିଆ ମଣ୍ଡଳ ଗଜପତି ସାମ୍ରାଜ୍ୟ ସୁଖ ସମ୍ପଦରେ ଜାଜ୍ୱଲ୍ୟମାନ । ଚତୁଃପାର୍ଶ୍ୱର ପଡୋଶୀମାନେ ହତୋତ୍ସାହରେ ମୁଣ୍ଡ ନୁଆଁଇ ଗଜପତିଙ୍କର ଗଜ ଗଣନା କରିବା ଅଭ୍ୟାସ ଛାଡି ଦେଲେଣି । କାହିଁ ଗଜପତି ମଉଡମଣି, ତାଙ୍କର ରାଜ୍ୟ ସୀମା ସ୍ପର୍ଶ କରିବାକୁ ଆସ୍ପର୍ଦ୍ଧା କାହାର ଆସିବ !

ଦୀର୍ଘ ବତିଶ ବରଷ ଶାସନରେ ଦିନେ କପିଳେନ୍ଦ୍ର କାହାରି କଥା ମନରେ ଧରି ନାହାନ୍ତି । ଜଗନ୍ନାଥଙ୍କ ପାଖରେ ସମର୍ପଣ କରିଦେଇଛନ୍ତି ନିଜର ସମସ୍ତ କାମନା, ଭାବନା ଆଉ ଗୋଟିଏ ପ୍ରତିଜ୍ଞା, ଓଡିଶା ମାଟିର ପାଦେ ଜମି କାହାକୁ ଅଧିକାର କରିବାକୁ ଦେବେନି । ସିଏ ଜଗନ୍ନାଥଙ୍କ କୃପା ଲୋଡନ୍ତି, ଦୃଷ୍ଟିକୁ ଆସୁଥିବା ସମସ୍ତ ସ୍ୱର୍ଣ୍ଣପ୍ରସୂ କଳିଙ୍ଗୋଡ୍ର ଉପକୂଳ ଓଡିଶା ଶାସନକୁ ଆଣି ବିଶାଳ ସବୁଜ ଓଡିଶା ଗଢିବେ, ଭାଷା ଆଉ ସଂସ୍କୃତିର ଉଦାହରଣ ସୃଷ୍ଟି କରିବେ ।

କିନ୍ତୁ ଆଜି ଦିନରେ କ'ଣ କ'ଣ ଘଟି ଚାଲିଛି?

କେହି ବିଶ୍ୱାସ କରୁନାହାନ୍ତି, ମହାପ୍ରଭୁ ଜଗନ୍ନାଥ ସପନାଇଛନ୍ତି ମୋ ଅନ୍ତେ ସାନପୁଅ ପୁରୁଷୋତ୍ତମକୁ ଗଜପତି ରାଜଗାଦି ଦେବାକୁ । ମନ୍ଦିରରେ କେହି ଏ କଥା ଗ୍ରହଣ କରୁନାହାନ୍ତି । କାହା ପାଟିରୁ ବାହାରୁଛି, କପିଳେନ୍ଦ୍ର ସେଇମତେ ଗଜପତି ଜୀବନ ପାଇଥିଲେ ନା । ସେମିତି



ଉତ୍ତରାଧିକାରୀ ବସେଇ ଦେଇଯିବେ । କୁଆଡେ ଗଲେ ଆମର ବୀର ଶ୍ରେଷ୍ଠ ହାମଭୀରଦେବ? ରାଜକୁମାର ହୋଇ ପିତାଙ୍କ ଅନୁପସ୍ଥିତିରେ ବି ଜୟ କରିଚାଲିଲେ ଦାକ୍ଷିଣାତ୍ୟ ।

କପିଳେନ୍ଦ୍ରଙ୍କ ସୁଯୋଗ୍ୟ ସନ୍ତାନ ! ପୁଣି ଜଗନ୍ନାଥ ତାଙ୍କୁ ରାଜ୍ୟର ରକ୍ଷକ ହେବାକୁ ମନା କରିବେ?

କପିଳେନ୍ଦ୍ର ନିଜ ପାଇଁ ସେଇ ଜଗନ୍ନାଥଙ୍କ ନାମ ନେଇ ମତ୍ତଭାନୁଙ୍କୁ ପର କରି ସିଏ ବଞ୍ଚି ଥାଉଥାଉ ସାମରିକ ଦକ୍ଷ ଭାବରେ ଓଡିଶା ଶାସନ ଅଧିକାର କରିନେଲେ । ମତ୍ତଭାନୁ ବି ବହୁବର୍ଷ ଗୁଡାରି କଟକରେ ବଞ୍ଚି କପିଳାବ୍ଦ ଆଉ କପିଳେନ୍ଦ୍ରଙ୍କ ଶାସନ ଦେଖିଛନ୍ତି । ଯେତିକି ଦୁଃଖ ଆଉ ଅନୁଶୋଚନାରେ ତାଙ୍କର ଶେଷ ଜୀବନ ଗତି କରିଛି, ଛିଟିକାଏ ତ କପିଳେନ୍ଦ୍ର ଭୋଗିବେ । ବିଶାଳ ଗଙ୍ଗବଂଶ ଏମିତି ନିରାଶିଆ ହୋଇ ନିଃଶେଷ ହୋଇଗଲା?

ଗଲାଣି ତ ସେ କଥା ଅନେକ ଦିନରୁ ।

ସେଇ ଛିଟିକାଏ ଦୁଃଖ ଅନୁଶୋଚନା ଆଉ ଅନୁତାପ ଡେରିରେ ହେଲେ ବି ଆଜି ଘେରି ଯାଇଛି କପିଳେନ୍ଦ୍ରଙ୍କୁ । ଅନୁତପ୍ତ ହେଉଛନ୍ତି ସତରେ ସିଏ ଜ୍ୟେଷ୍ଠ ରାଜକୁମାରଙ୍କୁ ତାଙ୍କ ପ୍ରାପ୍ୟରୁ ବଞ୍ଚିତ କରିଛନ୍ତି । ସତରେ ରାମଚନ୍ଦ୍ର ରାଜା ନ ହୋଇ ଭରତ ମୁଣ୍ଡରେ ରାଜମୁକୁଟ । କିଏ କାହିଁକି ମନ୍ଥରା ସାଜିଲା କଟକ ବାରବାଟୀ ରାଜପ୍ରାସାଦରେ, ସେଇ ଜଗାକାଳିଆଙ୍କୁ ଜଣା । ଓଡିଶା ଭାଗ୍ୟରେ ଏଇ ନିଷ୍ପତ୍ତିଟା ଗୋଟିଏ ଧୂମକେତୁ । ରାମାୟଣର ଦଶରଥ ରାଜାଙ୍କ ଘରର କୈକେୟୀଙ୍କୁ କଦାପି କପିଳେନ୍ଦ୍ରଙ୍କ ଦାସୀ ରାଣୀ ପାର୍ବତୀଙ୍କ ସହିତ ତୁଳନା କରାଯାଇ ନପାରେ । ଜଗନ୍ନାଥ ଭକ୍ତ ସେଇ ବ୍ରାହ୍ମଣୀ ଦେଖିବାକୁ ଯେତିକି ସୁନ୍ଦର, କପିଳାସ ନିଜ ସାମରିକ ଜୀବନରେ ବହୁତ ଅୟସ କରିଛନ୍ତି ତାଙ୍କୁ ନେଇ । ପାଟରାଣୀ ଆଉ କେତେ ରାଣୀଙ୍କ ଚକ୍ଷୁଶୂଳ ହୋଇଛି ରାଜାଙ୍କର ଏମିତି ଦାସୀ ପ୍ରୀତିରେ । ସୌନ୍ଦର୍ଯ୍ୟରେ ଆତ୍ମହରା ହୋଇନାହାନ୍ତି ପାର୍ବତୀ । ତାଙ୍କର ପୋଇଲି କେବଳ ପାର୍ବତୀଙ୍କୁ ସୁଶୋଭିତ କରେନି, ପ୍ରତିଟି ବାର୍ତ୍ତାଳପର ସଂଯୋଜନା କରିଥାଏ ବି । ଏମିତି ପୁଅ ପୁରୁଷୋତ୍ତମ ଜନ୍ମ ହେବା ଦିନଠାରୁ ତାଙ୍କୁ ଉତ୍ତରାଧିକାରୀ କରିବାକୁ ଏକ ପ୍ରକାର ପ୍ରତିଶ୍ରୁତିବଦ୍ଧ କରାଇ ନେଇଛନ୍ତି କୈକେୟୀ ଦଳ ।

ଦୁନିଆ ଅନେଇଛି । ବହୁ ପୁତ୍ର କଳିଙ୍ଗ ରାଜକୁମାର ଭାବରେ ପିତାଙ୍କ ରାଜଗାଦିକୁ ଚାହିଁ ରହିଛନ୍ତି । ଜଗତ ଚାହେଁ ସମାଜର ନିୟମ ଅନୁସାରେ ହାମଭୀରା ରାଜକୁମାର ଗାଦି ଲାଭ କରିବେ । ବିଗତ ଦଶନ୍ଧିରେ ନିଜର ସାମର୍ଥ୍ୟ ପ୍ରତିପାଦନ କରିଛନ୍ତି ଦାକ୍ଷିଣାତ୍ୟ ସମରରେ । ମାତ୍ର ପରିଶେଷରେ ଏକଛତ୍ର ଶାସକ ମାନସିକତା ସ୍ୱରୂପ ନିଷ୍ଠୁର ନିଷ୍ପତ୍ତି ନେଇଛନ୍ତି ପିତୃଦେବ । ଯେନତେନ ପ୍ରକାରେଣ ପୁରୁଷୋତ୍ତମ ହିଁ ତାଙ୍କ ଅନ୍ତେ ଗଜପତି ସମ୍ରାଟ୍ ହେବାର ପକ୍ଷପାତି ନିଷ୍ପତ୍ତି ନେଇଛନ୍ତି ଗଜପତି କପିଳେନ୍ଦ୍ର । ନ ଥାଉ ପଛେ କୌଣସି ଯୁଦ୍ଧରେ ଅବତୀର୍ଣ୍ଣ ହେବାର ଅଭିଜ୍ଞତା ଅବା କୌଣସି କାମରେ ଦକ୍ଷତା । ପୁରୁଷୋତ୍ତମ ଜଗନ୍ନାଥ ସହାୟକ ନିଶ୍ଚୟ । ଜଗନ୍ନାଥଙ୍କ ନାମକରଣ ହୋଇଛି ତାଙ୍କର !

ହାମଭୀରାଦେବ ଏହାକୁ ରାମାୟଣର ରାମଚନ୍ଦ୍ରଙ୍କ ପରି ସରଳରେ ନେଇ ନାହାନ୍ତି । ପ୍ରକାଶ୍ୟରେ ବିରୁଦ୍ଧ କରିଛନ୍ତି ଏହାର । ରାଜକୁମାରଙ୍କୁ ଏହା ବିରାଟ ଅପମାନ, ଅପମାନ ତାଙ୍କର ମାତୃଭୂମି ଓଡିଶାରେ । କାହିଁକି ସେ ପିତାଙ୍କର ତ୍ୟାଜ୍ୟପୁତ୍ର ହେଲେ? ବୁଝିବାକୁ ସକ୍ଷମ ହେଲେନି । ମା ପାଟରାଣୀ ବି ଭେଟି ପାରିଲେନି ହାମଭୀରାଙ୍କୁ । ସ୍ତ୍ରୀ  ନିରବ ରହିଲେ ସ୍ୱାମୀଙ୍କ ଏମିତି ରାଜନୀତି ଆଉ କୂଟନୀତିର କପଟ ପଶାରେ । ଆଉ ପୁଅ କପିଳେଶ୍ୱର ଅବସ୍ଥାନ କରୁଥାନ୍ତି କୋଣ୍ଡାଭିଡୁ ପରିଚ୍ଛା ଭାବରେ ।

ଗଜପତି କପିଳେନ୍ଦ୍ରଙ୍କ ପାଦତଳୁ ମାତୃଭୂମିର ମାଟି ଖସିବାର ଅନୁଭବ କଲେ । ମାଟି ନୁହେଁ ତ ନିଜର ଜ୍ୟେଷ୍ଠ ପୁଅ ଗଢି ତୋଳିଛନ୍ତି ବିସ୍ତୃତ ଓଡିଶା । ଦକ୍ଷିଣର ଦୁଇଗୁଣ ଆୟତନ ପାଇ ତିନି ଗୁଣ ହୋଇଯାଇଛି ମତ୍ତଭାନୁ ଶେଷଗଙ୍ଗରାଜଙ୍କ କ୍ଷୟିଷ୍ଣୁ ଓଡିଶାର । ଭାରସାମ୍ୟ ହରାଇବାକୁ ବସିଛନ୍ତି ଗଜପତି । ଟଳମଳ ହେବା ବେଳକୁ ପାଖରେ ଅଛନ୍ତି ଗଜପତିଙ୍କର ଦାୟିତ୍ୱରେ ରହିଥିବା ଅନ୍ତରଙ୍ଗ ମହାପାତ୍ର ।

ଓଡିଶା ରାଇଜର ଶାସନ କ୍ଷେତ୍ରରେ ଯେତିକି ପାତ୍ର ମନ୍ତ୍ରୀ ଅଛନ୍ତି ସବୁଠାରୁ ମହାରାଜଙ୍କର ପାଖରେ ପାଖରେ ଥାଆନ୍ତି ଜଣେ ଅତି ନିଜର । କପିଳେନ୍ଦ୍ର ନିଜକୁ ଗଜପତି ଭାବରେ ପ୍ରତିଷ୍ଠିତ କରିବା ବେଳରୁ ତାଙ୍କର ଅତି ନିଜର ହୋଇଯାଇଛନ୍ତି ଗଜପତିଙ୍କର ବ୍ୟକ୍ତିଗତ ସଚିବ ଉଚ୍ଛବ ମହାପାତ୍ର । ପିତାମହ କି ପ୍ରପିତାମହଙ୍କ କାଳରୁ ନିଜ ପରିବାରଟି ହୋଇପାରିଛନ୍ତି ଓଡିଆ ରାଜାଙ୍କ ଏକାନ୍ତ ନିଜର ।

ଉଚ୍ଛବ ଲକ୍ଷ୍ୟ କରନ୍ତି, ଗଜପତି ସ୍ଥିର ନାହାନ୍ତି । ବିଷଣ୍ଣ ଆଉ ଭାରାକ୍ରାନ୍ତ ବଦନ । ବାରବାଟୀ ରାଜପ୍ରାସାଦରେ ।

ଗଜପତିଙ୍କୁ ହାତରେ ଧରିନେଇ ପାଖରେ ଥିବା ଆରାମ ଚଉକିରେ ବସାଇ ଦେଇଛନ୍ତି । ଗଜପତିଙ୍କ ପାଟିରୁ ଭାଷା ବାହାରୁନି ।

ସମୟ ଆସିଗଲା ଉଚ୍ଛବ, ସମୟ ଆସିଗଲା । ଏମିତି ଧୀର କଣ୍ଠରେ କହୁଛନ୍ତି ଗଜପତି ଗୌଡେଶ୍ୱର । ସମୟ ଆସିଗଲା ପାପର ପ୍ରାୟଶ୍ଚିତ କରିବାକୁ । ଆଉ କେଇ ଦିନ ଓଡିଶା ପାଣି ପବନ?

ଉଚ୍ଛବ ମହାପାତ୍ର ଗଜପତିଙ୍କ ଅନ୍ତରଙ୍ଗ ମହାପାତ୍ର କେବଳ ନୁହନ୍ତି, ତାଙ୍କର ବଂଶ ପରିଚୟ ହେଉଛି ସିଏ ତିନି ପୁରୁଷରୁ କଳିଙ୍ଗ-ଓଡିଶାର ନୃପତିଙ୍କର ପରିବାର ତଥା ଦେଶ ଶାସନର ଜୀବନ୍ତ ପ୍ରତ୍ୟକ୍ଷଦର୍ଶୀ ହୋଇଛନ୍ତି । ବାପା ଆଉ ଜେଜେବାପା ବି ଗଙ୍ଗରାଜାଙ୍କ ଅନ୍ତରଙ୍ଗ ମହାପାତ୍ର ଥିଲେ ଆଉ ପ୍ରବହମାନ ରାଜ୍ୟ ଶାସନ ସହ ପରିଚିତ ଥିଲେ । ବୟସରେ ଗଜପତିଙ୍କର ସମସାମୟିକ ହୋଇଥିବାରୁ ଉଚ୍ଛବ ମହାପାତ୍ର ଗଜପତି ଗୌଡେଶ୍ୱରଙ୍କର ଅନ୍ତରର କଥା ଜାଣିବାକୁ ସମର୍ଥ ଥିଲେ ।

ଅନୁଭବ କରନ୍ତି ଅନ୍ତରଙ୍ଗ ମହାପାତ୍ର । ଦିନ କେଇଟାରେ ବାରବାଟୀ କଟକର ଉଆସରେ ବିଶାଳ ଭୂମିକମ୍ପ ଆସି ଛାରଖାର କରିଦେଇଛି ରାଜ ପରିବାରକୁ । ସୃଷ୍ଟିରେ ଅସମ୍ଭବ ଦିଗ ସାମନାକୁ ଆସିଲେ, ଫଳ ହୁଏ ବିପର୍ଯ୍ୟୟ । ସେଇ ବିପର୍ଯ୍ୟୟ କ୍ଷତବିକ୍ଷତ କରି ଓଡିଶାର ଅନନ୍ୟ ନରପତି କପିଳେନ୍ଦ୍ର ଦେବଙ୍କୁ ଛଟପଟ କରୁଛି । ମାନସିକତାର ମହାପ୍ରଳୟ ମଧ୍ୟଭାଗରେ ଗଜପତି ।

କିଏ ଜାଣିଥିଲା, ରାଜବଂଶରୁ ଉଦ୍ଭବ ନହେଲେ ବି ସେ ନିଜ ବାହୁ ବଳରେ ଦିନେ କପିଳ ରାଉତ ଅସାଧ୍ୟ ସାଧନ କରିପାରିବ? ସମଗ୍ର ଭାରତବର୍ଷ ଯେତେବେଳେ ବିଦେଶାଗତ ଯବନ ଶକ୍ତିର କବଳିତ ନିଜ ରାଜ୍ୟ କଳିଙ୍ଗ, ଉତ୍କଳ ଅବା ଓଡିଶାର ଦୋଦୁଲ୍ୟମାନ ସୀମା ଭିତରର ଶେଷ ଗଙ୍ଗରାଜ ନିଷ୍ଫଳ ଯୁଦ୍ଧରେ ଲିପ୍ତ ହୋଇଥାଇ ନଥିବା ରାଜା ପରି, ଓଡିଶାର ତଦାନୀନ୍ତନ ପାତ୍ର, ମହାପାତ୍ର, ପ୍ରଶାସକ ଅନୁଭବ କରନ୍ତି ମାତୃଭୂମିର ଶକ୍ତିହୀନତା, ନେତୃତ୍ୱ ବିହୀନେ ଅରାଜକତା । ସଞ୍ଚରିତ ଶକ୍ତିର ଏକତ୍ରୀକରଣ ଓ ପ୍ରୟୋଗର ଅଭାବ । କ୍ଷୀଣ ହୋଇ ନିର୍ବାପିତ ସ୍ତରରେ ପହଞ୍ଚି ଗଲାଣି ଗଙ୍ଗଶକ୍ତି । ସେସମୟରେ ଦୃଷ୍ଟିରେ ଆସୁଥିବା ଏକମାତ୍ର ସେନାଧ୍ୟକ୍ଷ ନିଜର ସେନାବିନ୍ୟାସ ଓ ଯୁଦ୍ଧ ପରିଚାଳନାରେ ଦକ୍ଷତା ପ୍ରଦର୍ଶନ କରିଥିବା କପିଳେନ୍ଦ୍ର ରାଉତ । ଗୋଟିଏ ଜଳନ୍ତା ଦୀପ ପରି ବୋଧ ହୁଅନ୍ତି ଓଡିଶାର ପ୍ରଶାସନିକ ଦିଗଦ୍ରଷ୍ଟାମାନଙ୍କୁ । ଓଡିଶାରେ ଅଦୃଶ୍ୟ ଶକ୍ତି ଓଡିଆ ଜୀବନ ପାଇଁ ଯେତିକି ଅନୁରକ୍ତ, ଅନେକ ଗୁଣରେ ଓଡିଆ ପ୍ରାଣର ପ୍ରତୀକ ଜଗନ୍ନାଥଙ୍କୁ ପ୍ରତିମାଧ୍ୱଂସୀ ଲୁଣ୍ଠନକାରୀ ଯବନମାନଙ୍କ ପରାଭବରୁ ମୁକ୍ତ କରିବାକୁ ଚିନ୍ତିତ । କହିପାରନ୍ତି ଏହା ଓଡିଆ ମାନସିକତା ଅବା ଅନୁଭୂତ ଜଗନ୍ନାଥ ଶକ୍ତି ।

ଦକ୍ଷିଣ ସୀମାରେ ଜଳଜଳ ହୋଇ ରେଡିବଂଶଠାରୁ ପରାଜୟ ମୁଖରେ ପଡିଥିବା ମତ୍ତ ଭାନୁଦେବ ଦୀର୍ଘଦିନ ହେବ ଓଡିଆ ମାନସପଟରେ ଯାତନାର କାରଣ ହୋଇଛନ୍ତି । ଓଡିଶାର ପାଇକ ଆଜି ନିଜର ଏକତା ଆଉ ଏକାଗ୍ରତା ହରାଇଛି, ପ୍ରାଣ ମୂର୍ଚ୍ଛିବାର ଉନ୍ମାଦ ହରାଇଛି । ଭାନୁଦେବଙ୍କ ଜୀବନବ୍ୟାପୀ ସାମରିକ ଅବଧାରଣ ସବୁବେଳେ ଲକ୍ଷ୍ୟହୀନ କରି ପକାଇଛି ପାଇକ ବାହିନୀକୁ । ଦିଗହରା ହୋଇଛନ୍ତି ପାଇକ ଗୋଷ୍ଠୀ । ବିଷାଦରେ ମର୍ମାହତ । ଶୀତଳ ଯୁଦ୍ଧକୁ ଆଦରିବାରେ କଳିଙ୍ଗ ପାଇକ

ପସନ୍ଦ କରେନି, ଜିତ ବା ମର ଫଳାଫଳ ଜୀଅନ୍ତା ହେବାର ମାନସିକତା ରଖିଛି ଓଡିଆ ପଦାତିକ! ଏମିତି ସ୍ଥାଣୁ ଓଡିଆ ସାମରିକ ବାହିନୀ ମତ୍ତଭାନୁଦେବଙ୍କ ଦକ୍ଷିଣ ଶିବିରରେ ।

ଏତିକିବେଳେ ଓଡିଶାରେ ସମସ୍ତଙ୍କ ଦୃଷ୍ଟିପଡେ ସେନାପତି କପିଳେନ୍ଦ୍ରଙ୍କ ଉପରେ । ଜଣେ ଉଚ୍ଚାଭିଳାଷୀ ଓ ସାମରିକ ବିଶେଷଜ୍ଞ । ମୁଣ୍ଡଟେକି ସାହସିକତାର ସଂକେତ ଦେଉଥିବା ବୀର କପିଳେନ୍ଦ୍ର । ଓଡିଶାର ରାଜଗାଦି, ରାଜଶକ୍ତି ଆଉ ପ୍ରଶାସନ ବିଷୟରେ ଦୃଢ ଧାରଣା ଅର୍ଜନ କରିଥିବା ଗଙ୍ଗରାଜ ମତ୍ତଭାନୁଦେବଙ୍କ ଅତ୍ୟନ୍ତ ବିଶ୍ୱସ୍ତ । ନିଜେ ଅନୁତପ୍ତ ହେଉଛନ୍ତି ତାଙ୍କ ବିହୁନେ ଗଙ୍ଗରାଜ କାହିଁକି ଏକ ନିଷ୍ଫଳ ଯୁଦ୍ଧରେ ମାସ ମାସ ଧରି ରାଇଜକୁ ଅନ୍ଧକାର ଓ କାତର ଭିତରେ ରଖିଛନ୍ତି ?

ଜଣେ ସମର୍ଥ ମହାପାତ୍ର ଗୁପ୍ତରେ ପ୍ରସ୍ତାବ ଦିଅନ୍ତି କପିଳେନ୍ଦ୍ରଙ୍କୁ । ମୃତବତ୍ ଗଙ୍ଗ ଶାସନର ଭବିଷ୍ୟତ କଅଣ ? ନିଜର ମତ ରଖ ବୀର କପିଳେନ୍ଦ୍ର । ଓଡିଶାର ପାତ୍ର ମନ୍ତ୍ରୀ ଚାହାନ୍ତି ଜୀବନ୍ତ ଓଡିଆ ସମର, ଓଡିଶା ଶାସନ । ଚାହାନ୍ତିନି ରାଜଶକ୍ତି ହୀନବଳ ହୋଇ ବହୁ ମାସ ସୀମାରେ ଛପିଯିବା ।

ଜଣ ଜଣ କରି ଅନେକ ରାଜପାରିଷଦ ପାତ୍ର ବି ସେମିତି ପ୍ରସ୍ତାବର ସୂଚନା ଦିଅନ୍ତି ସେନାପତି କପିଳେନ୍ଦ୍ରଙ୍କୁ । ଗଙ୍ଗରାଜ ନିଷ୍ପ୍ରଭ । ହଜିଯାଉଛନ୍ତି ଦକ୍ଷିଣ ସୀମାନ୍ତରେ କର୍ଣ୍ଣାଟ ବିଜୟନଗରମ୍ ଶକ୍ତିରେ ବିନିଯୁକ୍ତ ରାଜମହେନ୍ଦ୍ରୀ ରେଡି ପ୍ରଶାସକଙ୍କ ଚକ୍ରାନ୍ତରେ । ଆଶା ହରାଇଲାଣି ରାଜ୍ୟ, ନିଜର ରାଜା ମତ୍ତଭାନୁଦେବ ସଶରୀରେ ଲେଉଟି ପାରିବେ ତ ଦକ୍ଷିଣରୁ ?

ପରଦିନ ଦକ୍ଷିଣ ସୀମାର ଡଗର କିଛି ନିରାଶର ବାଣୀ ଦିଏ ସାମରିକ ପରିଷଦରେ । ସବୁ ମହାପାତ୍ର, ପାତ୍ର, ପ୍ରଶାସକ, ଜଗନ୍ନାଥ ମନ୍ଦିରର ସୁରକ୍ଷା ମୁଖ୍ୟ ସଂକଟ ସମୟରେ ଆସନ୍ତା ଦିନ ପାଇଁ କଅଣ କରାଯିବ ସେ ଆଲୋଚନାରେ ବ୍ୟସ୍ତ । ଶାସନର ଦାୟିତ୍ୱରେ ରହିଥିବା କପିଳେନ୍ଦ୍ର ବି ଉପସ୍ଥିତ । ଏକ ମୁଖରେ ପ୍ରସ୍ତାବ ଆସିଲା, ଆସନ୍ତାକାଲିଠାରୁ ଓଡିଶାର ରାଜଗାଦି ଲାଭ କରିବେ ସେନାପତି କପିଳେନ୍ଦ୍ର ରାଉତରାୟ । କିନ୍ତୁ କପିଳ ହଠାତ୍ ସଙ୍କୋଚ୍ଚ ହୋଇପଡିଲେ । କିଛି ସମୟ ନିରବ ରହି ଧୀର ସ୍ୱରରେ କହି ଉଠିଲେ, କପିଳେନ୍ଦ୍ର ପ୍ରସ୍ତାବର ସପକ୍ଷରେ ନଥିଲେ । ଚିନ୍ତା କରିଥିଲେ, ଏହା କଅଣ ଏତେ ସରଳ? ରାଇଜର ଅର୍ଦ୍ଧାଧିକ ସାମନ୍ତ ରାଜା ଗଙ୍ଗ ସପକ୍ଷରେ । ଖୁବ୍ କମ୍ ସମୟରେ ସମସ୍ତେ ନୂତନ ରାଜଶକ୍ତିକୁ ପରାହତ କରିବାର ଆଶଙ୍କା ରହିଛି । ଏକ ସମୟରେ ବିଦ୍ରୋହ ଘୋଷଣା କରି କଟକ ଅଧିକାର କରିନେବେ ଅବା ବିଚ୍ଛିନ୍ନ ହୋଇଯିବେ । ଏ ସମସ୍ୟା ସମାଧାନ ନକରି ମୋତେ ରାଜଗାଦିରେ ବସାଇଲେ କଅଣ ଫଳ ମିଳିବ? ଜଣେ ସେନାଧକ୍ଷ ଭାବରେ ରାଜ୍ୟଲାଭ କେତେ ସମୀଚୀନ, ମୋର ଚିନ୍ତାର ବିଷୟ ।

କାଳ ବିଳମ୍ବ ନକରି ଉତ୍କଳର ମୁଖ୍ୟ ମହାପାତ୍ର କହି ଉଠିଲେ, ଏବେ ମତ୍ତଭାନୁଦେବ ଆସିବାର ସମ୍ଭାବନା କମ୍ । ନ ଆସିଲେ ଯାହା ହେବ, ଏବେ ସେଇୟା ହେବ । ତେଣୁ ଆମେ ସ୍ଥିର କରୁଛୁ କଟକ କି ପୁରୀ ବ୍ୟତିରେକ କୌଣସି ସ୍ଥାନରେ ଗୁପ୍ତରେ କପିଳେନ୍ଦ୍ର ନିଜକୁ ରାଜ୍ୟର ରାଜା ବୋଲି ଘୋଷଣା କରି ନିଜ ଶକ୍ତିର ପରିଚୟ ଦିଅନ୍ତୁ । ବଙ୍ଗଳାର ଅନୁପ୍ରବେଶ ବନ୍ଦ ହୋଇଯିବ ।

ମୁଖ୍ୟ ମହାପାତ୍ର କହିଚାଲିଲେ, କାଳବିଳମ୍ବ ନ କରି ଚଳନ୍ତି ଶାକ ୧୩୫୭ ଶ୍ରାବଣ ମାସ କକଡା ଦ୍ୱିତୀୟା ଶୁକ୍ଳ ଚତୁର୍ଥୀ (ଆଜି କହିବାକୁ ଗଲେ, ୧୬-୦୮-୧୪୩୪ ମସିହା) ବୁଧବାର ଦିନ ଏକାମ୍ର କୃତ୍ତିବାସ ମନ୍ଦିରରେ ସମସ୍ତ ରାଜଶକ୍ତି ଆଉ ଗୁପ୍ତଚର ଆଢୁଆଳରେ ସିଂହାସନ ଆରୋହଣ ପର୍ବ ସମାପନ ହେବା । ସେନାପତି ନିଜର ଆଭ୍ୟନ୍ତରୀଣ ସେନାମାନଙ୍କୁ ନିକଟ ସ୍ଥାନଗୁଡିକରେ ସ୍ଥାନିତ କରିବେ ।

କପିଳେନ୍ଦ୍ର ଆଗାମୀ ଗୁପ୍ତ କାର୍ଯ୍ୟସୂଚୀ ପାଇଁ ଟିକିଏ ସନ୍ଦିଗ୍ଧ ଦେଖାଯାଉଥିଲେ, କିନ୍ତୁ ତାଙ୍କର ଆଗ୍ରହ ସହଜରେ ପରିଦୃଷ୍ଟ ହେଉଥିଲା । ନିଜର ସ୍ୱାର୍ଥ ପାଇଁ ଯେତିକି ନୁହେଁ, ଓଡିଆ ମର୍ଯ୍ୟାଦାହାନୀ ଆଉ ଗଙ୍ଗବଂଶ ପ୍ରତିଷ୍ଠିତ ଉତ୍କଳର ଜଳ ଜଳ ହୋଇ ଦେଖାଯାଉଥିବା ଦୁର୍ଗତି ତାଙ୍କୁ ଟାଣୁଥିଲା

ରାଜଗାଦି ଉପରେ ବସି ରାଜ୍ୟ ଆଉ ପ୍ରଜାମାନଙ୍କ ସମନ୍ୱୟରେ ନିଜର ପ୍ରାଣପ୍ରିୟ ରାଜ୍ୟକୁ ରକ୍ଷା କରିବାକୁ ।

ସିଏ ଅନୁମାନ କରିପାରୁଥିଲେ ଏମିତି ଗୁପ୍ତରେ ସିଂହାସନ ଲାଭ କଲେ, ଗଙ୍ଗବଂଶ କି ସେମାନଙ୍କର ବଂଶଜମାନେ କ୍ଷମା ଦେବେନି । ରାଜା ମତ୍ତଭାନୁଦେବ ତାଙ୍କ ସେନା ପରିଚାଳନାରେ ଖୁସି ହୋଇ ପୁଅ ବୋଲି ମନେକରନ୍ତି । ଏହାର ମାନେ ନୁହେଁ ଯେ ତାଙ୍କୁ ନିଜେ କାହିଁକି ବାପା ବୋଲି ମନେ କରିବେ? ଦକ୍ଷ ସେନାପତି ହିସାବରେ ରାଜାଙ୍କୁ ସେ ଶାନ୍ତିରେ ଗ୍ରହଣ କରିପାରିନାହାନ୍ତି । ଗଙ୍ଗବଂଶ ବଙ୍ଗଦେଶକୁ ଛାରଖାର କରିଦେଇଥିଲା । ଲାଙ୍ଗୁଳା ନୃପତି ତାଙ୍କୁ ଓଡିଶାରେ ପଶିବାକୁ ଅନୁମତି ଦେଇ ନଥିଲା । ବରଂ ଜିତାପଟ ହୋଇ ପ୍ରଚୁର ଧନ ଲାଭ କରିଥିଲେ । କିନ୍ତୁ ମତ୍ତଭାନୁଦେବ ଗଙ୍ଗବଂଶର ସାଜିଲେ ଅକାଳକୁଷ୍ମାଣ୍ଡ । ନା ନୈତିକତା ନା ସାମରିକତା । ଜଣେ ସ୍ତ୍ରୈଣ ଉତ୍କଳ ନୃପତି କଅଣ ବା କରିପାରେ?

ଏମିତି ଗୁପ୍ତରେ ରାଜସିଂହାସନ ଲାଭକଲେ କପିଳେନ୍ଦ୍ର । ପ୍ରଜା, ରାଜ୍ୟ, ଗୋ-ବ୍ରାହ୍ମଣ ସେବା ବ୍ରତ ନେଲେ ସିଏ ।

ମତ୍ତଭାନୁଦେବ ଆଉ ବାରବାଟୀ ଫେରିଲେନି । କିନ୍ତୁ ତାଙ୍କ ସମ୍ପର୍କୀୟ ତିନି ସାମନ୍ତ ରାଜା କପିଳେନ୍ଦ୍ରଙ୍କ ବଇରୀ ସାଜିଲେ । ଖେମୁଣ୍ଡି, ନନ୍ଦପୁର ଆଉ ସୀମାଚଳ ସନ୍ନିକଟ ଓଡଡିୟାର । ଏମାନେ ମତ୍ତଭାନୁଙ୍କର ଓ ତାଙ୍କ ପୂର୍ବପୁରୁଷମାନଙ୍କର ରକ୍ତଗତ ସମ୍ପର୍କ । ଯେତେଦୂର ଏମାନେ ମତ୍ତଭାନୁଙ୍କ ପ୍ରତି ସମ୍ବେଦନଶୀଳ ଥିଲେ, ତା'ଠାରୁ ଅଧିକ ଆଶାୟୀ ଥିଲେ ନିଜେ କିପରି ଉତ୍କଳର ରାଜସିଂହାସନ ପାଇବେ । ତାଙ୍କର ଲାଳସା ବଳବତ୍ତର ଥିଲା, ମତ୍ତଭାନୁଙ୍କର କୌଣସି ଉତ୍ତରାଧିକାରୀ ଦେଖାଯାଉ ନଥିଲେ । ସେଥିରେ କପିଳେନ୍ଦ୍ର ଯବନିକା ପକାଇଛନ୍ତି । ସମର୍ଥନ ତ ଦୂରର କଥା, ସେମାନେ କୌଣସି କର ଦେବେନି ଏବଂ ସର୍ବଦା କପିଳେନ୍ଦ୍ରଙ୍କୁ ବିରୋଧ କରିବେ । ଓଡିଶାର ପ୍ରଜାମାନଙ୍କୁ କପିଳେନ୍ଦ୍ରଙ୍କ କୌଶଳରେ ସିଂହାସନ ଲାଭ କରିଥିବା ପ୍ରସଙ୍ଗ ଉନ୍ମୋଚନ କରି ଏହା ଜଗନ୍ନାଥଙ୍କ ସମର୍ଥକ ରାଜା ମତ୍ତଭାନୁଦେବଙ୍କ ପ୍ରତି ବିଶ୍ୱାସଘାତ ନୁହେଁ, ପୁରୁଷୋତ୍ତମଙ୍କୁ କୁଠାରାଘାତ ବୋଲି ଜଣାଇଦେବେ ।

କପିଳେନ୍ଦ୍ର ଅନୁଭବ କଲେ, ତାଙ୍କ ପାଦତଳର ଓଡିଶା ମାଟି ଯେମିତି ଥରୁଛି । ଜଗନ୍ନାଥ ତାଙ୍କୁ କଟମଟ କରି ଅନାଉଛନ୍ତି ।

ଚିନ୍ତା ଉଚ୍ଛବ ମହାପାତ୍ରଙ୍କର ଅଟକି ଗଲା ଯେତେବେଳେ ଗଜପତିଙ୍କର ମୁଖ ନିସୃତ ଦି'ପଦ ମନକୁ ଆସିଲା । ସତରେ ତ କପିଳେନ୍ଦ୍ର ନିଜକୁ କଳିଙ୍ଗ ନୃପତି ଭାବରେ ଘୋଷିତ ହେବାର ପରେ ପରେ କେତେ ଭୀତତ୍ରସ୍ତ ହୋଇପଡିଥିଲେ । କିନ୍ତୁ ମାନସିକତାରେ ସାହସ ଉଦୟ ହେଲା ।

ମନରେ ସାହସ ଆସିଲା । କପିଳେନ୍ଦ୍ର କଦାପି କଳିଙ୍ଗ-ଉତ୍କଳକୁ କ୍ଷୁଣ୍ଣ ହେବାକୁ ଦେବେନି । ମା ଆଉ ମାଟି ପାଇଁ କାମ କଲେ ନିଶ୍ଚୟ ସହାୟ ହେବେ ଓଡିଶା ଜନନୀ । ସେଇ ଦେବୀଙ୍କ ଆଶୀର୍ବାଦ ନେଇ ଓଡିଶା ଗଢି ଉଠିବ । ସବୁ ପ୍ରତିବନ୍ଧ ତୁଟିଯିବ । ନିଃଶ୍ୱାସରେ ଦମ୍ ଆସିଲା କପିଳେନ୍ଦ୍ରଙ୍କର ।

କଳା ବାଦଲ ପରି ତିନି ଚାରି ଗଙ୍ଗ-ସାମନ୍ତ ପରିବାର ଉଡିଗଲେ । ନ ଦିଅନ୍ତୁ ଏଇ ତିନି ଦକ୍ଷିଣ ଦିଗର ସାମନ୍ତ ରାଜା । ବ୍ୟକ୍ତିଗତ ଭାବରେ କାହାର ଶକ୍ତି ନାହିଁ ଏଇ ସେନାପତିକୁ ମୋ ଜନ୍ମମାଟିରେ ହରାଇଦେବେ । କ୍ଷତ୍ରିୟ ବଂଶର ଦାୟାଦ ମୁଁ । ମୋ ଘର ରାଜବଂଶ ଆଉ ରାଜକାର୍ଯ୍ୟରେ ଧୂରୀଣ । ମୋର ଗୋପନରେ ସିଂହାସନ ଲାଭ ନିଶ୍ଚୟ ପୁରୀ ପରି ଗୁଜବ ପ୍ରବଣ ଅଞ୍ଚଳରେ ନିଶ୍ଚୟ କିଛି ନା କିଛି ସାଧାରଣ ପରିହାସ ସୃଷ୍ଟି କରିଛି । ହାତୀ ସୁନାକଳସ ଢାଳି ମୋତେ ରାଜା କରିଛି ଆଉ କାଶିଆ ମୋର ଅନ୍ତରଙ୍ଗ ବନ୍ଧୁ । ଲୋକକଥା ସତ୍ୟ ନ ହୋଇପାରେ ।

ଯାହା କୁହନ୍ତୁ, ମୋତେ ଆଦରର ରାଜା ବୋଲି ସ୍ୱୀକାର କରୁଛନ୍ତି । ନିଶ୍ଚୟ ମନ୍ଦିରରେ କେତେ ଗଙ୍ଗ ସମର୍ଥକ ଅଛନ୍ତି । ସେଥିପାଇଁ ଈର୍ଷାପରାୟଣ କଥା କୁହାଳିଆ ଗଙ୍ଗଭକ୍ତମାନେ ମୋ ଭାଗ୍ୟ ନେଇ ବେଶ୍ ଚର୍ଚ୍ଚା କରୁଛନ୍ତି ।

ନାଗ ସାପ ମୁଣ୍ଡ ଉପରେ ଫଣା ଟେକି ରହୁ ଅବା ମୋତେ ଭାନୁଦେବଙ୍କ ପୋଷ୍ୟପୁତ୍ର କୁହନ୍ତୁ ଏହା ମୋର ନୂତନ ଭାଗ୍ୟ ଉଦୟ ବୋଲି ଚିତ୍ରଣ କରାଯାଇଛି ।

ଭଲ ହୋଇଛି, ମୋର ବ୍ୟକ୍ତିଗତ ପରିଚୟ ଲୁପ୍ତ ରହିଛି । ଆଉ ଗୋଟିଏ କଥା ରହିଛି ମୋ ସହିତ କାଶିଆ ଏହି ଗୁଜବଗୁଡିକରେ ବଳିଷ୍ଠ ଭାବରେ ଯୋଡା ଯାଇଛି । ଲୁକ୍‌କାୟିତ ହୋଇ ରହିଯାଇଛି କିପରି ରାଜ୍ୟ ପ୍ରଶାସନର ମୁଖ୍ୟ ଅମାତ୍ୟ କାଶୀନାଥ ମହାପାତ୍ର ଆପ୍ରାଣ ଚେଷ୍ଟା କରିଛନ୍ତି କପିଳେନ୍ଦ୍ରଦେବ ନାମର ଜଣକୁ ଓଡିଶାର ନୃପତି ବେଶରେ ଦେଖିବାକୁ । ସିଏ ହିଁ ଗୁଜବର କାଶିଆ !

ଜଗନ୍ନାଥଙ୍କ ମୂର୍ତ୍ତି ସାମନାରେ ନତଜାନୁ କପିଳେନ୍ଦ୍ର । ପ୍ରଭୁ ମୋତେ ସତ୍ ସାହସ ଦିଅନ୍ତୁ । ପ୍ରତିଜ୍ଞା କରୁଛି ଆପଣଙ୍କ ସାନ୍ନିଧରେ ମୁଁ ମୋର ସମସ୍ତ ଲକ୍ଷ୍ୟ ହାସଲ କରିବି । ତୁମ ସହିତ ବିଶାଳ ଓଡିଶା ରାଇଜ ହେବ ମୋର ପରମ ଲକ୍ଷ୍ୟ । ଓଡିଶା ଗଢି ଉଠିବ ସର୍ବାଙ୍ଗ ଉନ୍ନତି କକ୍ଷେ ।

ଦେଖିବାକୁ ମିଳିଲା ୩୩ ବର୍ଷ ଶାସନରେ ବିଶାଳ ଓଡିଶା । କପିଳେନ୍ଦ୍ର ଦେବଙ୍କ ସାମରିକ ବଳର ପ୍ରତୀକ ଗଙ୍ଗାରୁ ସେତୁବନ୍ଧ ଯାଏଁ ଲମ୍ବିଯାଇଥିବା କଳିଙ୍ଗ ଉତ୍କଳ ରାଜ୍ୟ, ଯାହାକୁ ମାନ୍ୟତା ଦେଲେ ଓଡିଶା ରାଇଜ ଭାବରେ । ଓଡିଶା ଛଡା ଆଉ କୌଣସି ନାମ ରହିବନି ଏଠାରେ । ଦେଶୀୟ ଭାବରେ ରାଜ୍ୟର ବ୍ୟାପ୍ତ ବିଶାଳ ହାତୀ ସମ୍ପଦର ଉପଯୋଗ କରି ଗଢିଥିଲେ ବିଶାଳ ହାତୀ ବାହିନୀ । ତଦାନୀନ୍ତନ ଭାରତବର୍ଷରେ ଶକ୍ତିରେ ଅଦ୍ୱିତୀୟ । ଓଡିଶାର ଭାଷା ଓଡିଆ, ରାଜଦରବାର ଓ ରାଜ୍ୟ ସହ ସମ୍ପୃକ୍ତ ସବୁଠାରେ ଦେଶ ମାତୃକାର ଭାଷା ହିଁ ବିଦ୍ୟମାନ ହେବ । ସତକୁ ସତ ସୃଷ୍ଟି ହୋଇଛି ଓଡିଆ ସାହିତ୍ୟାକାଶରେ ଧ୍ରୁବତାରା । ସାରଳା ମହାଭାରତ ।

ଦୁନିଆର ସମସ୍ତ ଲକ୍ଷ୍ୟ ହାସଲ କରିଛନ୍ତି ଗଜପତି କପିଳେନ୍ଦ୍ର । ସମରକ୍ଷେତ୍ରରେ ଅପ୍ରତିଦ୍ୱନ୍ଦ୍ୱୀ ଗଜପରି ଗୌଡେଶ୍ୱର.... ।

ଜୀବନର ସାୟାହ୍ନରେ ଗଜପତି ନିଜକୁ ଅସହାୟ ମଣୁଛନ୍ତି ଗଜପତି ଗୌଡେଶ୍ୱର । ପରିବାରକୁ ବିଶ୍ୱାସର ମନ୍ଦିର ବୋଲି ମଣି ଯେଉଁ କପିଳେନ୍ଦ୍ର ନିଜର ବଂଶଧରମାନଙ୍କୁ ପରିବର୍ଦ୍ଧିତ ଓଡିଶାର ଉପାନ୍ତ ଗଡଗୁଡିକରେ ପରିଚ୍ଛା ବା ତତ୍ତ୍ୱାବଧାରକ ଭାବରେ ନିଯୁକ୍ତ କରିଥିଲେ, ପୁଅ ନାତି ଯେଉଁମାନଙ୍କ ପାଇଁ ବିଶାଳ ସାମରିକ ଥାଟ ଜଗାଇଥିଲେ, ସେମାନେ ଆଜି ତାଙ୍କର ଧର୍ମଗତ ନିଷ୍ପତ୍ତିକୁ ଅମାନ୍ୟ କରି ପରିବାର ଭିତରେ ଯୁଦ୍ଧ ଘୋଷଣା କରିଛନ୍ତି । ସ୍ୱୟଂ ଜଗନ୍ନାଥ ଯେଉଁ ନିଷ୍ପତ୍ତି ଦେଇଛନ୍ତି, ତାହା ବି ଗ୍ରହଣୀୟ ହେଉନି ନିଜ ପରିବାରରେ ।

ସ୍ୱୟଂ ଜଗନ୍ନାଥଙ୍କ ଚୟନରେ କିଏ ତାଙ୍କ ଅନ୍ତେ ଗଜପତି ସିଂହାସନ ଲଭିବ, ତାହାର ମାନ୍ୟ ହେଉନି ରାଜପୁତ୍ରମାନଙ୍କ ଦ୍ୱାରା ।

ବିଷଣ୍ଣ ଗଜପତି । ପୁଣି ଓଡିଶାର ଦକ୍ଷିଣ ସୀମାରେ ବିଜୟନଗରର ଉଲ୍ଲଙ୍ଘନ । ବ୍ୟତିବ୍ୟସ୍ତ ଗଜପତି ।

ଘରେ ପଛେ ଯାହା ହେଉ, ବିଶାଳ ଓଡିଶାର କୁଶାଗ୍ର ପରିମିତ ଜମି ହରାଇବାକୁ ଦେବିନି ।

ଜଗନ୍ନାଥ କାହିଁକି କପଟ ରଚିଲେ, ଏହି ବିଷୟରେ ଶୋଚନା କରି କିଂକର୍ତ୍ତବ୍ୟମୂଢ ବୃଦ୍ଧ ଗଜପତି ।

କରିବି କ'ଣ ?

---

ସମାରୋହ, ୧୨୮, ଡୁମୁଡୁମା (କ)
ଖଣ୍ଡଗିରି, ଭୁବନେଶ୍ୱର- ୩୦



# ପଞ୍ଚସଖା ସାହିତ୍ୟରେ ବିଷ୍ଣୁ ଉପାସନା

ହିମାଦ୍ରୀ ତନୟା ମିଶ୍ର

ବିଷ୍ଣୁ ଉପାସନା ଧର୍ମକୁ ବୈଷ୍ଣବ ଧର୍ମ କୁହାଯାଏ । ଏହି ଧର୍ମ ସଗୁଣ ଉପାସନା ଓ ପ୍ରତୀକ ଉପାସନା ଭାବରେ ପ୍ରସିଦ୍ଧି ଲାଭ କରିଛି । ଏହି ପ୍ରତୀକ ରୂପେ ନାରାୟଣ, ବାସୁଦେବ, ରାମ, କୃଷ୍ଣ, ବିଷ୍ଣୁଙ୍କର ବିଭିନ୍ନ ଅବତାର ସନ୍ନିବେଶିତ । ଏଥିରେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କୁ ବିଶ୍ୱର ସୃଷ୍ଟି, ପାଳନ ଓ ସଂହାରକର୍ତ୍ତା ଭାବରେ ଅଭିହିତ କରାଯାଇଛି । କାରଣ ଈଶ୍ୱର ବିଶ୍ୱାସ ଓ ଧର୍ମ ମାନବ ସମାଜର ଧାରଣା ଉପରେ ନିର୍ଭରଶୀଳ । ଏହି ବିଶ୍ୱାସଟି ମଣିଷ ମନରେ ସ୍ୱତଃ ଜାତ ହୋଇଥାଏ । ପ୍ରକୃତିର ଯେଉଁ ବିଭାଗ ତା'ର ବଞ୍ଚିବା ନିମନ୍ତେ ଅପରିହାର୍ଯ୍ୟ ହୋଇଛି ସେସବୁ ପ୍ରତି ମଣିଷ ଚିର କୃତଜ୍ଞ ରହିଛି । ଏହି କୃତଜ୍ଞତାରୁ ମନରେ ଭକ୍ତିର ସଂଶୟ ଘଟିଥାଏ । ଫଳସ୍ୱରୂପ ପ୍ରକୃତିର ବିଭିନ୍ନ ବିଭାବକୁ ଉପାସନା କରିବା ଉଦ୍ଦେଶ୍ୟରେ ବିଭିନ୍ନ ଧର୍ମୀୟ ଭାବନାର ସୃଷ୍ଟି । ମାନବ ସମାଜର ସୃଷ୍ଟି କାଳରୁ ଏହି ଧର୍ମୀୟ ଭାବନାର ସୃଷ୍ଟି ହୋଇଛି । ଏଥିରେ ଭାବନାର ସୃଷ୍ଟି ହୋଇଛି ଏଥିରେ ସନ୍ଦେହ ନାହିଁ ।

ବ୍ରାହ୍ମଣ ସାହିତ୍ୟରେ ବିଷ୍ଣୁଙ୍କ ଅବତାର ସମ୍ପର୍କରେ ଆଭାସ ମିଳେ ଯେ ପାଳନକର୍ତ୍ତା ହେତୁ ବିଷ୍ଣୁଙ୍କର ବହୁ ଅବତାର ଗ୍ରହଣ କରୁଥିବାର କଳ୍ପନା ରହିଛି । ଯେପରି ମତ୍ସ୍ୟ, କୂର୍ମ, ବରାହ, ବାମନ, ପର୍ଶୁରାମ, ନାରାୟଣ, ବାସୁଦେବ, ହରି, ରାମ, କୃଷ୍ଣ ପ୍ରଭୃତି ବିଭିନ୍ନ ମନୋରମ ରୂପର ବର୍ଣ୍ଣନା ରହିଛି । ବୈଷ୍ଣବ ଧର୍ମ ଶ୍ରୀଜଗନ୍ନାଥଙ୍କଠାରେ ବିଷ୍ଣୁତ୍ୱ ଆରୋପ କରି ସମସ୍ତ ଅବତାରର ସେ ଜନ୍ମଦାତା ବୋଲି ସ୍ୱୀକାର କରିଛନ୍ତି । ଏହି ଅବତାର ମାଧ୍ୟମରେ ବୈଷ୍ଣବ ଧର୍ମର ଗତି ନିରବଚ୍ଛିନ୍ନ ସାଧନାରେ ବ୍ରତୀ ହୋଇଆସିଛି । ଐତିହାସିକ ଦୃଷ୍ଟିକୋଣରୁ ଆଲୋଚନା କଲେ ଜଣାଯାଏ ଖ୍ରୀ.ପୂ. ଚତୁର୍ଥ ଶତାବ୍ଦୀରେ ମେଘାସ୍ଥିନିସ୍ ଭାରତକୁ ଆସିଥିଲେ । ସେ ତାଙ୍କର 'ଇଣ୍ଡିକା'ରେ ଲେଖିଛନ୍ତି ଯେ, ମଥୁରାରେ ଯମୁନା ନଦୀ କୂଳରେ ହରେକୃଷ୍ଣ ପୂଜା ପାଇଥିଲେ । ଖ୍ରୀ.ପୂ. ୨ୟ ଶତାବ୍ଦୀର ମଧ୍ୟ ଭାରତର 'ଘୋସୁଣ୍ଡି' ଶିଳାଲେଖରେ ଶଙ୍କର୍ଷଣ ଓ ତାଙ୍କ ଭାଇ କୃଷ୍ଣଙ୍କ ନାମ ଉଲ୍ଲେଖ ରହିଛି । ମେଘାସ୍ଥିନିସ୍‌ଙ୍କ ଭାରତ ବିବରଣୀ ଘୋସୁଣ୍ଡି ଶିଳାଲେଖ ଓ ନାଗାଘାଟ ଶିଳାଲେଖରୁ ସ୍ପଷ୍ଟ ହୁଏ ଯେ ଯୀଶୁଖ୍ରୀଷ୍ଟଙ୍କ ଜନ୍ମ ହେବାର ଶତଶତ ବର୍ଷ ପୂର୍ବରୁ ଉତ୍ତର ଭାରତ, ପଶ୍ଚିମ-ଭାରତ, ଦକ୍ଷିଣ ଭାରତ ଇତ୍ୟାଦି ସ୍ଥାନମାନଙ୍କରେ ବୈଷ୍ଣବ ଧର୍ମର ଧାରା ପ୍ରବାହମାନ । ସେସମୟରେ ଭାରତ ବିଭିନ୍ନ ପ୍ରାନ୍ତ ପ୍ରସିଦ୍ଧ ରାଜପଥମାନଙ୍କ ଦ୍ୱାରା ସଂଯୁକ୍ତ ଥିଲା । ରାଜପଥ ଉପରେ ଓଡ଼ିଶା ଅବସ୍ଥିତ ଥିବାରୁ ଭାରତର ଅନ୍ୟାନ୍ୟ ପ୍ରାନ୍ତରେ ପ୍ରଚାରିତ ଓ ପ୍ରସାରିତ ବୈଷ୍ଣବ ଧର୍ମ ଦ୍ୱାରା ପ୍ରଭାବିତ ହୋଇଥିବା ସୁନିଶ୍ଚିତ ।

ଓଡ଼ିଶାରେ ଜଗନ୍ନାଥଙ୍କ ପ୍ରାଚୀନତାକୁ ଅବଲୋକନ କଲେ ବୈଷ୍ଣବ ଧର୍ମର ପ୍ରାଚୀନତା ପ୍ରମାଣିତ ହୁଏ । ଏହାର କାରଣ ଜଗନ୍ନାଥ ସଂସ୍କୃତିର ସୁଦୃଢ଼ ଭିତ୍ତିଭୂମି ଉପରେ ଓଡ଼ିଶାର ବୈଷ୍ଣବ ଧର୍ମ ପ୍ରତିଷ୍ଠା ଲାଭ କରିଛି । ନବମ ଶତାବ୍ଦୀରେ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କ ପୁରୀ ଆଗମନ ଏବଂ ଶ୍ରୀକ୍ଷେତ୍ରରେ ଅଦ୍ୱୈତ ମତବାଦ ପ୍ରଚାର ଓ ବୌଦ୍ଧ

ପଣ୍ଡିତମାନଙ୍କୁ ଧର୍ମୀୟ ଯୁକ୍ତିରେ ପରାସ୍ତ କରି ବ୍ରାହ୍ମଣ ଧର୍ମରେ ଦୀକ୍ଷିତ କରାଇପାରିଥିଲେ । ଜଗନ୍ନାଥଙ୍କର ମନ୍ଦିର ପୁନଃ ନିର୍ମିତ ହୋଇଥିଲା ଚୋଡ଼ଗଙ୍ଗ ଦେବଙ୍କ ରାଜତ୍ୱ କାଳରେ ଦ୍ୱିତୀୟ ଶତାବ୍ଦୀରେ । ବୈଷ୍ଣବ ଧର୍ମର ତ୍ରିଧାରା ଶ୍ରୀରାମ, ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥ ଉପାସନାର ସମନ୍ୱିତ ରୂପ ହେଉଛି ପଞ୍ଚସଖା ଧର୍ମ । ଶୈବ, ଶାକ୍ତ, ଗାଣପତ୍ୟ ଧର୍ମ ଇତ୍ୟାଦିର ପ୍ରଭାବ ପଞ୍ଚସଖା ଧର୍ମରେ ପରିଦୃଷ୍ଟ ହୁଏ । ଯାହା ପଞ୍ଚସଖା ଧର୍ମର ଅନ୍ୟାନ୍ୟ ବୈଶିଷ୍ଟ୍ୟ ରୂପେ ବିବେଚନା କରାଯାଏ । ଷୋଡ଼ଶ ଶତାବ୍ଦୀରେ ସୂର୍ଯ୍ୟବଂଶୀ ନରପତି ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ କାଳରେ ପ୍ରଚଳିତ ଧାର୍ମିକ ପରମ୍ପରାରେ ଏକ ନୂତନ ଧାର୍ମିକ ଆନ୍ଦୋଳନର ସୂତ୍ରପାତ ହୋଇଥିଲା । ଏହି ସମୟରେ ଉତ୍କଳୀୟ ଧର୍ମର ନୂଆ ରୂପ ମର୍ଯ୍ୟାଦା ପ୍ରକାଶିତ ହେବା ସହ ଓଡ଼ିଆ ସାହିତ୍ୟକୁ ବିଭିନ୍ନ ଧର୍ମଗ୍ରନ୍ଥର ରଚନା କରି ଶ୍ରୀବୃଦ୍ଧି ସାଧନ କରିଥିଲେ ।

ଗୁପ୍ତ ରାଜତ୍ୱ କାଳରେ ବ୍ରାହ୍ମଣ୍ୟ ଧର୍ମର ଅଭ୍ୟୁତ୍‌ଥାନ ପରେ ବର୍ଣ୍ଣାଶ୍ରମ ଧର୍ମର ପ୍ରତିଷ୍ଠା ପଥ ସୁଗମ ହୋଇଥିଲା । ବର୍ଣ୍ଣାଶ୍ରମ ଧର୍ମାନୁସାରେ ସମାଜ ଚାରୋଟି ବର୍ଣ୍ଣରେ ବିଭକ୍ତ ହେଲା– ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର । ସେହିପରି ନୃତ୍ୟ, ସଙ୍ଗୀତ ବିଦ୍ୟା, ଗଣିତ ବିଦ୍ୟା ଆଦିର ଆଦର ରହିଥିଲା । ଏଥିସହିତ ସମାଜ ଶୃଙ୍ଖଳା ପାଇଁ ଧର୍ମ, ରାଜନୀତି, ଧନୁର୍ବିଦ୍ୟା, ମୀମାଂସା, ନ୍ୟାୟ, ତର୍କ ଆଦି ସମ୍ବନ୍ଧରେ ଶିକ୍ଷା ବ୍ୟବସ୍ଥା ରହିଥିଲା ଏବଂ ବିଭିନ୍ନ ପର୍ବପର୍ବାଣି ଓ ଓଷାବ୍ରତ ମଧ୍ୟ ପାଳିତ ହେଉଥିଲା । ଅକ୍ଷୟ ତୃତୀୟା, ଚନ୍ଦନଯାତ୍ରା, ମଦନ ମହୋତ୍ସବ (ହୋଲି), ରଥଯାତ୍ରା, ଗଣେଶ ପୂଜା, ଦୁର୍ଗାପୂଜା, କୁମାର ପୂର୍ଣ୍ଣିମା, ଦୀପାବଳି, କାର୍ତ୍ତିକ ପୂର୍ଣ୍ଣିମା, ମାଘସ୍ନାନ ଏଥିସହିତ ଦୋଳ ପୂର୍ଣ୍ଣିମା, ଚମ୍ପକ ଦ୍ୱାଦଶୀ, ପ୍ରଥମାଷ୍ଟମୀ, ଶିବ ଚତୁର୍ଦ୍ଦଶୀ, ଧନୁଯାତ୍ରା, ଇତ୍ୟାଦି କଥା ପଞ୍ଚସଖା ଯୁଗର ବୈଶିଷ୍ଟ୍ୟ । ପଞ୍ଚସଖା ସାହିତ୍ୟରେ ଶକୁନ ଶାସ୍ତ୍ରକୁ ବହୁ ମାନ୍ୟତା ଦିଆଯାଇଛି । ଶୁଭ ଶକୁନ ଦର୍ଶନ କାର୍ଯ୍ୟରେ ସଫଳତାର ପ୍ରତୀକ । ସେହିପରି ଅଶୁଭ ଶକୁନ ଦର୍ଶନ କାର୍ଯ୍ୟରେ ବିଘ୍ନକାରକ ।

ଶ୍ରୀଚୈତନ୍ୟ, ଉତ୍କଳୀୟ ବୈଷ୍ଣବମାନଙ୍କ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହୋଇଥିଲେ । ୧୫୧୫ ଖ୍ରୀଷ୍ଟାବ୍ଦ ପରଠାରୁ ଜୀବନର ଶେଷ ୧୮ବର୍ଷ ସେ ଶ୍ରୀକ୍ଷେତ୍ରରେ କଟାଇଥିଲେ । ଶ୍ରୀଚୈତନ୍ୟ ଓଡ଼ିଶା ଆଗମନ କାଳରୁ ଓଡ଼ିଶାରେ ଶୂନ୍ୟବାଦୀ ପଞ୍ଚସଖା ସେମାନଙ୍କ ଯୋଗ ପଣ୍ଡିତ ଜ୍ଞାନ ମିଶ୍ରା ଭକ୍ତିର ପ୍ରଚାର ଆରମ୍ଭ କରିସାରିଥିଲେ । କଷ୍ଟସାଧ୍ୟ ଯୋଗଧର୍ମୀ ସାଧନା ଅପେକ୍ଷା ଚୈତନ୍ୟଙ୍କ ପ୍ରଚାରିତ ପ୍ରେମଭକ୍ତିଟି ଧୀରେ ଧୀରେ ଲୋକ ଧର୍ମରେ ପରିଣତ ହୋଇଥିଲା । ଓଡ଼ିଆ ଜ୍ଞାନ ମିଶ୍ରା ଭକ୍ତିଧାରାର ଶ୍ରେଷ୍ଠ ସାଧକ ପାଞ୍ଚଜଣ– ବଳରାମ ଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ, ଯଶୋବନ୍ତ ଦାସ ଓ ଶିଶୁ ଅନନ୍ତ ଦାସ । ଏମାନେ ସମସ୍ତେ 'ଦାସ' ସଂଜ୍ଞାଧାରୀ । ଅଚ୍ୟୁତାନନ୍ଦ ଦାସଙ୍କ 'ଶୂନ୍ୟ ସଂହିତା' ଗ୍ରନ୍ଥରେ ଶ୍ରୀଚୈତନ୍ୟଙ୍କର ଏହି ପାଞ୍ଚଜଣ ପଞ୍ଚଆତ୍ମା ଭାବରେ ଉଲ୍ଲେଖ ରହିଛି ।

ପଞ୍ଚସଖା ସାହିତ୍ୟରେ ଶୂନ୍ୟବାଦର ପରିକଳ୍ପନା ରହିଛି । ଯେଉଁଥିରେ ହୀନଯାନ ଓ ମହାଯାନର ପ୍ରଭାବ ପରିଲକ୍ଷିତ ହୁଏ । ବ୍ୟକ୍ତିଗତ ଜୀବନ ମଧ୍ୟ ୪ଟି ଆଶ୍ରମରେ ବିଭକ୍ତ ହେଲା ଯଥା– ବ୍ରହ୍ମଚର୍ଯ୍ୟା, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଓ ଯତିବ୍ରତ । ଏହାର ଉଦ୍ଦେଶ୍ୟ ଥିଲା ବ୍ୟକ୍ତି ଜୀବନରେ ପ୍ରତି ପର୍ଯ୍ୟାୟଟି ଶାସ୍ତ୍ରସମ୍ମତ କର୍ତ୍ତବ୍ୟର ସମ୍ପାଦନ କରିବ । ରାଜାମାନେ ମଧ୍ୟ ବର୍ଣ୍ଣାଶ୍ରମ ଧର୍ମର ସୁରକ୍ଷା ଓ ପ୍ରତିଷ୍ଠା ଉପରେ ବିଶେଷ ଧ୍ୟାନ ଦେଉଥିଲେ । ଏହି ଧର୍ମରେ ବ୍ରାହ୍ମଣମାନଙ୍କୁ ଶ୍ରେଷ୍ଠ ଆସନ ଦିଆଯାଇଥିଲା । ମାଠର, ନଳ, ଗଙ୍ଗ, ଶୈଳୋଦ୍ଭବ, କାଦମ୍ବ ଓ ଗଙ୍ଗବଂଶୀୟ ରାଜାମାନେ ବ୍ରାହ୍ମଣ ଥିଲେ । ସମାଜରେ ଶିକ୍ଷାଦାନ କ୍ଷେତ୍ରରେ ଏହି ବ୍ରାହ୍ମଣମାନେ ନିଯୁକ୍ତି ପାଇଥିଲେ । ସେହିପରି କ୍ଷତ୍ରିୟମାନେ ଦେଶର ଶାସନ ଓ ସୁରକ୍ଷା ଦାୟିତ୍ୱରେ ଥିଲେ । ବୈଶ୍ୟମାନଙ୍କର ମୁଖ୍ୟ କର୍ମ ଥିଲା ବାଣିଜ୍ୟ, କୃଷି ଓ ପଶୁପାଳନ । ଶୂଦ୍ରମାନଙ୍କର କାର୍ଯ୍ୟ ଥିଲା ଗୋପାଳନ, ଚିତ୍ରକଳା, ନୃତ୍ୟ, ଗାୟକ ଓ ବାଦନ । ଏହିପରି ବର୍ଣ୍ଣାଶ୍ରମ ଧର୍ମର ଅନେକ ସୂଚନା ପଞ୍ଚଦଶ ଶତାବ୍ଦୀର ପଞ୍ଚସଖାଙ୍କ ରଚନାବଳୀରେ ଉଲ୍ଲେଖ ଥିବା ଜଣାଯାଏ । ସଂଭ୍ରାନ୍ତ ବଂଶୀୟ ନାରୀମାନେ ଉଚ୍ଚଶିକ୍ଷା ଲାଭ କରୁଥିଲେ ଏବଂ ଏହା ସହ

ରାଜ୍ୟ ଶାସନ ମଧ୍ୟ କରୁଥିଲେ । ଅଭିଲେଖରୁ ଜଣାଯାଏ, ସୋମବଂଶୀ ରାଣୀ କର୍ପୂରଶ୍ରୀ ଉଚ୍ଚଶିକ୍ଷିତା ଥିଲେ ଏବଂ ତୃତୀୟ ଅନଙ୍ଗଭୀମ ଦେବଙ୍କ କନ୍ୟା ଚନ୍ଦ୍ରିକା ଦେବୀ ନୃତ୍ୟଗୀତରେ ବିଶାରଦା ଥିଲେ । ସେହିପରି ଭୌମକର ବଂଶୀୟ ତ୍ରିଭୁବନ ଦେବୀ, ପୃଥ୍ୱୀ ମହାଦେବୀ ଆଦି କେତେଜଣ ରାଣୀ ସିଂହାସନ ଆରୋହଣ ମଧ୍ୟ କରିଥିଲେ । ନାରୀର ଗୁରୁ ସାମାଜିକ ଦାୟିତ୍ୱ ଥିଲେ ମଧ୍ୟ ସେ ସ୍ୱେଚ୍ଛାଚାରିଣୀ ନ ଥିଲା । ନାରୀ ସ୍ୱାଧୀନ ଥିଲା । ପଞ୍ଚସଖା ସାହିତ୍ୟରେ ନାରୀକୁ ଉଚ୍ଚ ସ୍ଥାନ ଦିଆଯାଇଛି । ବଳରାମ ଦାସଙ୍କ 'ଜଗମୋହନ ରାମାୟଣ', ଜଗନ୍ନାଥ ଦାସଙ୍କ 'ଭାଗବତ' ଓ ଅଚ୍ୟୁତାନନ୍ଦ ଦାସଙ୍କ 'ହରିବଂଶ'ରେ ନାରୀର ଗୁରୁ ଦାୟିତ୍ୱ ପ୍ରସଙ୍ଗ ଉଲ୍ଲେଖ ରହିଛି । ଶିକ୍ଷାର ପ୍ରାଚୀନ ପରମ୍ପରା ପଞ୍ଚଦଶ ଶତାବ୍ଦୀରେ ପ୍ରଚଳନ ଥିଲା । ଯେମିତି ଶାସ୍ତ୍ର ଅଧ୍ୟୟନ କରିବା, ଶିକ୍ଷାକୁ ଉତ୍ସାହିତ କରିବା ପାଇଁ ଭୂମି ଓ ଗ୍ରାମ ଦାନ କରିବା, ଜ୍ୟୋତିଷ ବିଦ୍ୟା, ତନ୍ତ୍ର ବିଦ୍ୟା, ଶୂନ୍ୟବାଦରେ ଆଦି ପ୍ରବର୍ତ୍ତକ ହେଉଛନ୍ତି ବୌଦ୍ଧ ଦାର୍ଶନିକ ଆଚାର୍ଯ୍ୟ ନାଗାର୍ଜୁନ । ତାଙ୍କ ମତରେ ଉତ୍ପତ୍ତି, ଗତି, ଦୁଃଖ, ବନ୍ଧନ, ମୋକ୍ଷ, କର୍ମ, କର୍ମଫଳ, ସଂସାର ଆଦି ହେଉଛି ଶୂନ୍ୟବାଦ । ଶୂନ୍ୟ ସାଧନା ନିମନ୍ତେ ପଞ୍ଚସଖା ଯୋଗ ସାଧନାକୁ ଗୁରୁତ୍ୱ ଦେଇଛନ୍ତି । ଯୋଗର ମୂଳ ଅର୍ଥ ଆତ୍ମା ଓ ପରମାତ୍ମା । ଯୋଗ ଅର୍ଥ ଚିତ୍ତ ସଂଯତ ଓ ଦେହବାଦ ବା କାୟା ସାଧନା ଜରୁରୀ । ପଞ୍ଚସଖା ସାହିତ୍ୟରେ ଚତୁର୍ବିଧ ଯୋଗ ସାଧନା ରହିଛି ଆରମ୍ଭ ଯୋଗ, ହଂ ଯୋଗ, ପରଚେ ଯୋଗ, ନିସ୍ପତୀ ଯୋଗ । ମାତ୍ର ହଂ ଯୋଗର ପ୍ରାଧାନ୍ୟ ପଞ୍ଚସଖା ସାହିତ୍ୟରେ ଉଲ୍ଲେଖ ହୋଇଛି । ଏହି ହଂ ଯୋଗ ଷଡ଼ଚକ୍ର ସାଧନାର ମାଧ୍ୟମରେ ସାଧିତ ହୋଇଥାଏ । ଏହି ଷଡ଼ଚକ୍ର ହେଲେ ମୂଳାଧାର, ସ୍ୱାଧୀଷ୍ଠାନ, ମଣିପୁର, ଅନାହତ, ବିଶୁଦ୍ଧାକ୍ଷୟ ବିଶୁଦ୍ଧ ବା ଆଜ୍ଞା ଚକ୍ର ଓ ସହସ୍ରାର ଚକ୍ର । ଏହି ଚକ୍ରଗୁଡ଼ିକ କମଳ ବା ପଦ୍ମ ନାମରେ ଆଖ୍ୟାତ । ପଞ୍ଚସଖା ସାହିତ୍ୟରେ ପିଣ୍ଡ ବ୍ରହ୍ମାଣ୍ଡ, ତତ୍ତ୍ୱର ଅବିକଳ ଅନୁସରଣ ଦେଖାଯାଏ । ସକଳ ଭୁବନ, ଦ୍ୱୀପ, ସମୁଦ୍ର, ନଦୀ, ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ନକ୍ଷତ୍ର ଇତ୍ୟାଦି ପିଣ୍ଡ- ବ୍ରହ୍ମାଣ୍ଡ ମଧ୍ୟରେ ଅବସ୍ଥିତ । ପଞ୍ଚସଖା ସାହିତ୍ୟରେ ପରମେଶ୍ୱରଙ୍କ ପ୍ରତି ଅନୁରକ୍ତିକୁ ଭକ୍ତି କୁହାଯାଏ । ଦ୍ୱିବିଧ- ପରା, ଅପରା । ଅପରା ଭକ୍ତି ହେଉଛି ଶୁଦ୍ଧାଭକ୍ତି । ଯାହା ୯ଟି କର୍ମ ବିଶିଷ୍ଟ ଅର୍ଥାତ୍ ନବଧା ଭକ୍ତି ଭାବରେ ପରିଚିତ । ଏହା ଶ୍ରବଣ ଓ କୀର୍ତ୍ତନଠାରୁ ଆରମ୍ଭ କରି ଆତ୍ମ ନିବେଦନ ପର୍ଯ୍ୟନ୍ତ । 'ପରା ଭକ୍ତି' ହେଉଛି ଜ୍ଞାନ ମିଶ୍ରା ଭକ୍ତି । ଏହାର ମୁଖ୍ୟ ଉଦ୍ଦେଶ୍ୟ, ଜ୍ଞାନ ସାହାଯ୍ୟରେ ମୁକ୍ତିଲାଭ କରିବା । ପଞ୍ଚସଖା ସାହିତ୍ୟରେ ସୃଷ୍ଟି ତତ୍ତ୍ୱର ବିବରଣୀ ପ୍ରକ୍ରିୟା ବିଭିନ୍ନ ଗ୍ରନ୍ଥ ମାଧ୍ୟମରେ ପ୍ରକାଶିତ । ଯଥା- ବ୍ରହ୍ମାଣ୍ଡ ଭୂଗୋଳ, ବିରାଟ ଗୀତା, ଅମରକୋଷ ଗୀତା, ତୁଳାଭିଣା ଓ ଶୂନ୍ୟ ସଂହିତା ଆଦି ଗ୍ରହଣୀୟ ।

ବଳରାମ ଦାସଙ୍କ 'ବିରାଟ ଗୀତା'ରେ ଭଗବାନ ବିରାଟ ରୂପରେ ଶୂନ୍ୟରେ ଅବସ୍ଥାନ କରୁଥିଲେ । ଏହି ସମୟରେ ସୃଷ୍ଟିର କ୍ରିୟା ସମ୍ପାଦନ ନିମନ୍ତେ ଶୂନ୍ୟରୁ ବିନ୍ଦୁ ନିକ୍ଷେପ କଲେ । ସେହି ବିନ୍ଦୁ ଆକାଶରୁ ଧୂମବର୍ଣ୍ଣ ଧାରଣ କରି ଖସିଥିଲା । ସେଥିରୁ ଶକ୍ତି ଓ ଶକ୍ତିରୁ ଓଁକାର ସୃଷ୍ଟି ହେଲା । ଓଁକାରରୁ ତ୍ରିବୀଜ ଓ ତ୍ରିବୀଜର ନାମର ଉତ୍ପତ୍ତି ହେଲା ଏବଂ ନାମରୁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ସୃଷ୍ଟି ପରେ ଜଗତ ଓ ଛପନ କୋଟି ଜନ୍ତୁଙ୍କର ଉତ୍ପତ୍ତି ହେଲା । ସେହିପରି ଜଗନ୍ନାଥ ଦାସଙ୍କ 'ତୁଳାଭିଣା'ରେ ମହାଶୂନ୍ୟରେ ଜ୍ୟୋତି ରୂପ ରହିଛି । ମୂଳ ରୂପ ଜ୍ୟୋତିରୁ ଜାତ । ଏହି ମୂଳରୁ ଅର୍ଦ୍ଧମାତ୍ରା ଓ ଅର୍ଦ୍ଧମାତ୍ରାରୁ ଓଁକାର ଜନ୍ମିଲା । ଏହି ଓଁକାରରୁ ଜଗତର ସୃଷ୍ଟି । ପଞ୍ଚସଖାଙ୍କ ସାହିତ୍ୟରେ ସୃଷ୍ଟି କର୍ମ ସହ ପ୍ରକୃତିକୁ ମଧ୍ୟ ବିଶେଷ ଧ୍ୟାନ ଦିଆଯାଇଛି । ପଞ୍ଚସଖା ସାହିତ୍ୟରେ ଅବତାରବାଦର ଭୂମିକା ମଧ୍ୟ ରହିଛି । ହିନ୍ଦୁତତ୍ତ୍ୱ ଦ୍ୱାରା ପ୍ରଭାବିତ ପଞ୍ଚସଖା ନିଜକୁ ଉପନ୍ୟାସଙ୍କ ସହଚର ଭାବେ ଅଭିହିତ କରି ଅନନ୍ତ, ସତ୍ୟ, ତ୍ରେତା, ଦ୍ୱାପର ଓ କଳିଯୁଗର ବିବରଣୀ ରହିଛି । ଏହି ସାହିତ୍ୟରେ ଆଚାର୍ଯ୍ୟ ଶଙ୍କରଙ୍କଠାରୁ ଆରମ୍ଭ କରି ବହୁ ଅର୍ବାଚୀନ ଦାର୍ଶନିକ ନାମରେ ମହତ୍ୱକୁ ସ୍ୱୀକାର କରିଛନ୍ତି । ପଞ୍ଚସାଧକମାନେ ମଧ୍ୟ ନାମକୁ ଏକାକ୍ଷର, ପ୍ରଣବ ଓ ଅଜପା-ଗାୟତ୍ରୀ ଭାବରେ ଗ୍ରହଣ କରିଛନ୍ତି । ନାମ ଭଜନ ହିଁ ଗତି ଓ ମୁକ୍ତିର ଏକମାତ୍ର ପଥ ତାଙ୍କର ବିଶ୍ୱାସ । ତେଣୁ

ବ୍ରହ୍ମ ଅପେକ୍ଷା ନାମର ଗୁରୁତ୍ୱ ରହିଛି । ପ୍ରେମ ଭକ୍ତିଟି ଏଥିରେ ଯୋଗମୁଖୀ, ଉଚ୍ଛ୍ୱାସଧର୍ମୀ ନ ହୋଇ ଗାମ୍ଭୀର୍ଯ୍ୟଧର୍ମୀ ହୋଇଛି । ଏହି ସାଧନପଥରେ ଅଗ୍ରସର ହେବା ପାଇଁ ଗୁରୁବାକ୍ୟ । ଗୁରୁଦୀକ୍ଷା ଓ ଗୁରୁଙ୍କ ଆଶୀର୍ବାଦର ଗୁରୁତ୍ୱ ରହିଛି । ଏହା କେବଳ ପଞ୍ଚସଖାଙ୍କ ଭିତରେ ସୀମିତ ନ ହୋଇ ଭାରତୀୟ ଧର୍ମ ସାଧନ ପରମ୍ପରାରେ ଗୁରୁଦାନ ଏକ ଅବିଚ୍ଛେଦ୍ୟ ଅଙ୍ଗ । ଉଦାହରଣ ସ୍ୱରୂପ- ଶିଶୁ ଅନନ୍ତ ଦାଶଙ୍କ 'ହେତୁ ଉଦୟ ଭାଗବତ' ଗୁରୁଙ୍କ ମହିମା ଉପରେ ପର୍ଯ୍ୟବସିତ । ଯଦି ଯନ୍ତ୍ର, ତନ୍ତ୍ର ଓ ମନ୍ତ୍ର ଉପରେ ଦୃଷ୍ଟି ଆକର୍ଷଣ କରାଯାଏ ତେବେ ପଞ୍ଚସଖାଙ୍କ ସାହିତ୍ୟରେ ତନ୍ତ୍ରର ୪ଟି ପୀଠ ଶରୀର ମଧ୍ୟରେ ପରିକଳ୍ପିତ କରାଯାଇଛି ।

ପଞ୍ଚସଖା ଧର୍ମରେ ଶୂନ୍ୟ ଉପାସନାର ପ୍ରାଧାନ୍ୟ ରହିଥିଲେ ହେଁ ସଗୁଣ ଓ ନିର୍ଗୁଣ ଏବଂ ସାକାର ଓ ନିରାକାରର ଉପାସକ ମଧ୍ୟ ଥିଲେ । ଶ୍ରୀଜଗନ୍ନାଥଙ୍କୁ ପଞ୍ଚସଖା ଉଭୟ ରୂପରେ ଦେଖିଛନ୍ତି । 'ଅକ୍ଷରମୟୀ ଆରାଧନା' ପଞ୍ଚସଖା ଧର୍ମର ଅନ୍ୟତମ ବୈଶିଷ୍ଟ୍ୟ । ଯଥା- 'ଓଁ ହରେ ରାମ କୃଷ୍ଣ ଶ୍ୟା ହ୍ଲୀଂ ଶ୍ଲୀଂ କ୍ଲୀଂ ।' ଓଁ ବ୍ରହ୍ମର ନିକଟତମ ନାମ । ହ୍ଲୀଂ- ବଳଭଦ୍ର, ଶ୍ଲୀଂ- ସୁଭଦ୍ରା ଓ କ୍ଲୀଂ- ଜଗନ୍ନାଥ ଭାବେ ଅକ୍ଷରମୟୀ ଆରାଧନା ଭାବରେ ପରିକଳ୍ପିତ । ସେହିପରି 'ଅକର୍ମ ସାଧନା' ପଞ୍ଚସଖା ସାହିତ୍ୟର ଅନ୍ୟତମ ବୈଶିଷ୍ଟ୍ୟ । ଅର୍ଥାତ୍ ଭଗବାନଙ୍କ ପ୍ରତି ନିଷ୍କର୍ମ ପ୍ରେମଭାବ ହିଁ ଏହାର ପରାକାଷ୍ଠା । 'ଘଟସାଧନା' ମଧ୍ୟ ପଞ୍ଚସଖା ସାହିତ୍ୟର ଅନ୍ୟତମ ବିଶେଷତ୍ୱ । ଘଟସାଧନା ଦ୍ୱାରା ଜୀବ-ପରମର ମିଳନ ହୋଇଥାଏ । ପଞ୍ଚସଖା ଧର୍ମର ତ୍ରିବେଣୀ ତତ୍ତ୍ୱ ହେଉଛନ୍ତି ଜଗନ୍ନାଥ, ଯୋଗ ଓ ଜ୍ଞାନ ମିଶ୍ରା ଭକ୍ତି । ବେଦ, ବେଦାନ୍ତ, ଉପନିଷଦ, ସଂହିତା ପ୍ରଭୃତିର କଠିନ ଭାବସମୂହକୁ ସରଳ ପ୍ରାନ୍ତୀୟ ଭାଷାରେ ପରିପ୍ରକାଶ କରିବା ଏହି ସାହିତ୍ୟର ଅନ୍ୟତମ ବୈଶିଷ୍ଟ୍ୟ । କାବ୍ୟର କୋମଳ ବିଷୟବସ୍ତୁ ନୁହେଁ ଦର୍ଶନର କଠିନ ତତ୍ତ୍ୱ ରାଜି ପଞ୍ଚସଖା ସାଧକଗଣ ପ୍ରକାଶ କରିଛନ୍ତି । ପଞ୍ଚସଖା ସାହିତ୍ୟରେ ବ୍ୟବହୃତ କେତେକ ଛନ୍ଦ ମଧ୍ୟ ଏହାର ଅନ୍ୟତମ ବୈଶିଷ୍ଟ୍ୟ । ଯେମିତି ଛନ୍ଦ ମଧ୍ୟ ଏହାର ଅନ୍ୟତମ ବୈଶିଷ୍ଟ୍ୟ ଯେମିତି ଦାଣ୍ଡିବୃତ୍ତ ଓ ନବାକ୍ଷରୀ ବୃତ୍ତ । ଗାନ ନିମିତ୍ତ ସହଜ ଥିବାରୁ ଏହି ଦ୍ୱୟ ବୃତ୍ତଶୈଳୀରେ ପଞ୍ଚସଖା ସାହିତ୍ୟ ରଚିତ । ଅନୁବାଦ ପରିବର୍ତ୍ତେ ଅନୁସରଣ ଓ ସ୍ୱକଳ୍ପନା ପ୍ରସୂତ କଥାବସ୍ତୁର ସଂଯୋଜନା ସ୍ୱକୀୟତା ବଳରେ ବୈଚିତ୍ର୍ୟ ପ୍ରତିପାଦନ କରିବା ହେଉଛି ପଞ୍ଚସଖା ସାହିତ୍ୟର ବିଶେଷତ୍ୱ । ଏହାର ପ୍ରକୃଷ୍ଟ ଉଦାହରଣ ବଳରାମ ଦାସଙ୍କ 'ଦାଣ୍ଡି ରାମାୟଣ', ଜଗନ୍ନାଥ ଦାସଙ୍କ 'ଭାଗବତ' ଏବଂ ଅଚ୍ୟୁତାନନ୍ଦ ଦାସଙ୍କ 'ହରିବଂଶ' ।

ଉଦ୍‌ଯୋଗ ହିଁ ସର୍ବସିଦ୍ଧିର ମୂଳମନ୍ତ୍ର । ଜ୍ଞାନ, ଭକ୍ତି ଓ କର୍ମଦ୍ୱାରା ସିଦ୍ଧିଲାଭ ହୁଏ । ଚିତା-ଚଇତନ, ଜପାମୁଣି, ତୁଳସୀମାଳା ଓ ଲେଙ୍ଗୁଟି ଦ୍ୱାରା ମଣିଷ ଏକ ଆଧ୍ୟାତ୍ମିକ ସ୍ତରକୁ ଯାଏ ସତ କିନ୍ତୁ ପ୍ରକୃତ ଆତ୍ମାରେ ଆତ୍ମାର ସନ୍ଧାନ ନିମିତ୍ତ । ଆତ୍ମ-ସଂଯମ, ଆତ୍ମ-ସଂଯୋଗ, ଆତ୍ମ-ଶୁଚି, ଆତ୍ମ-ତ୍ୟାଗ ଓ ଆତ୍ମ-ସନ୍ତୋଷର ମନୋଭାବ ରହିବା ଆବଶ୍ୟକ । ଏହି ଉପଦେଶ ଓ ମହାନ୍ ଆଦର୍ଶ ପଞ୍ଚସଖା ସାହିତ୍ୟକୁ ଋଦ୍ଧିମନ୍ତ ଓ ଚିର ସୌନ୍ଦର୍ଯ୍ୟମୟ କରିପାରିଛି ।

ଅଧ୍ୟାପିକା
ଓଡ଼ିଆ ବିଭାଗ
ରମାଦେବୀ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର



# ଉତ୍କଳ ଦିବସର ଐତିହ୍ୟ ଓ ସ୍ୱାତନ୍ତ୍ର୍ୟତା

ଉମା ଶଙ୍କର ପ୍ରସାଦ

ଅନୈକ୍ୟ ମଧ୍ୟରେ ଐକ୍ୟ, ବୈସାଦୃଶ୍ୟ ମଧ୍ୟରେ ସାଦୃଶ୍ୟ ଏବଂ ବୈଷମ୍ୟ ମଧ୍ୟରେ ସାମ୍ୟଦୃଷ୍ଟି କରିବା ହିଁ ସଂସ୍କୃତିର ମୂଳମନ୍ତ୍ର । ଭାରତବର୍ଷରେ ଭୌଗଳିକ ପରିବେଶଗତ ତଥା ସାଂସ୍କୃତିକ, ଜାତିଗତ, ଧର୍ମ ଓ ଭାଷାଗତ ବହୁ ବୈଷମ୍ୟ ଥିଲେ ହେଁ ସଂହତିର ବାଣୀ ଏ ଦେଶରେ ଯୁଗେ ଯୁଗେ ନିନାଦିତ ହୋଇ ଆସୁଅଛି । ଭାରତୀୟ ଜନତା ସକଳ ବିଭେଦକୁ ଭୁଲି ସଂହତି ସୂତ୍ରରେ ଆବଦ୍ଧ ହୋଇ ବିଦେଶୀ ଶାସନକୁ ଏ ଦେଶରୁ ବିଲୋପ କରିଥିଲେ । ଏହି ଭାରତୀୟ ମୁକ୍ତି ସଂଗ୍ରାମରେ ଓଡ଼ିଶାର ଭୂମିକା ଥିଲା ଅବିସ୍ମରଣୀୟ । ଗୌରବଦୀପ୍ତ ଓଡ଼ିଆଜାତି ମୁକ୍ତି ସଂଗ୍ରାମରେ ନିଜକୁ ସାମିଲ କରିଥିଲା ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ । ମାତ୍ର ୧୯୩୬ ମସିହା ଅପ୍ରେଲ ପହିଲା ଥିଲା ଓଡ଼ିଶା ଇତିହାସରେ ଏକ ସ୍ମରଣୀୟ ଦିବସ । ଭାରତୀୟ ମାନଚିତ୍ରରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ସେହିଦିନଠାରୁ ସ୍ଥାନ ପାଇଲା । ତେଣୁ ଏହି ଦିବସଟି ପ୍ରତ୍ୟେକ ଓଡ଼ିଆଙ୍କ ପାଇଁ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ, ଯାହାକି ଆମ ଜାତି ଓ ରାଜ୍ୟ ପାଇଁ ଅତ୍ୟନ୍ତ ଗର୍ବ ଓ ଗୌରବର ବିଷୟ । ୧୫୬୮ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ଶେଷ ହିନ୍ଦୁ ରାଜା ମୁକୁନ୍ଦ ଦେବଙ୍କ ମୃତ୍ୟୁ ପରେ ଉତ୍କଳର ଭାଗ୍ୟାକାଶରେ ଘୋର ଦୁର୍ଦ୍ଦିନ ଘୋଟିଆସେ । ଆଫଗାନ, ମୋଗଲ ଓ ମରହଟ୍ଟାମାନେ ଓଡ଼ିଶା ଆକ୍ରମଣ କରି ଏହାର ଐକ୍ୟ, ସଂସ୍କୃତି, ଐତିହ୍ୟ ଓ ସ୍ୱାତନ୍ତ୍ର୍ୟକୁ ଲୋପ କରିବାକୁ ପ୍ରଚେଷ୍ଟା କରନ୍ତି । ୧୭୬୫ ଖ୍ରୀଷ୍ଟାବ୍ଦରେ ଲର୍ଡ କ୍ଲାଇବ୍ ବଙ୍ଗ, ବିହାର ସହିତ ଓଡ଼ିଶାର ଦେଓ୍ୱାନୀ ଗ୍ରହଣ କରନ୍ତି । ୧୮୦୩ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଇଂରେଜମାନଙ୍କର ଶାସନାଧୀନ ହୁଏ । ଏହିପରି କାଳର କ୍ରୁର ପରିହାସରେ ବିଜୟ ବିମଣ୍ଡିତ ଇତିହାସ ପ୍ରସିଦ୍ଧ ଉତ୍କଳ ଜନନୀ ଶ୍ରୀହୀନା, ଛିନ୍ନମସ୍ତା, ଶୀର୍ଣ୍ଣ କଳେବର ହୋଇଯାଏ । ୧୮୫୭ରେ ଅନୁଷ୍ଠିତ ଐତିହାସିକ ସିପାହୀ ବିଦ୍ରୋହ ଭାରତୀୟ ସ୍ୱାଧୀନତା ସଂଗ୍ରାମ ପାଇଁ ଥିଲା ପ୍ରଥମ ସ୍ୱର ଉତ୍ତୋଳନ, କିନ୍ତୁ ୧୮୧୭ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ବରପୁତ୍ର ଯୋଦ୍ଧା ବକ୍ସି ଜଗବନ୍ଧୁ ଇଂରେଜ ସରକାରଙ୍କ ବିରୁଦ୍ଧରେ ରଣହୁଙ୍କାର ଦେଇ ଇଂରେଜର ସ୍ଥିତିକୁ ଦୋହଲାଇ ଦେଇଥିଲେ । ୧୯୨୧ ମସିହାରେ ଅସହଯୋଗ ଆନ୍ଦୋଳନର ସୂତ୍ରପାତ ବହୁ ପୂର୍ବରୁ ସମ୍ବଲପୁରର ବୀର ସୁରେନ୍ଦ୍ର ସାଏ ଇଂରେଜ ସରକାର ବିରୁଦ୍ଧରେ ୧୮୨୭ ମସିହାରେ ସ୍ୱର ଉତ୍ତୋଳନ କରନ୍ତି, ଯାହା ପ୍ରମାଣ କରିଦିଏ ଯେ ଇଂରେଜ ସରକାର ବିରୋଧରେ ଓଡ଼ିଶାରେ ହିଁ ପ୍ରଥମ ଜନଜାଗରଣ ହୋଇଥିଲା ।

ପ୍ରାଚୀନ ଉତ୍କଳକୁ ଅବଲୋକନ କଲେ ଜଣାଯାଏ ସମ୍ରାଟ ରଘୁଙ୍କ ଦିଗ୍‌ବିଜୟ ସମ୍ପର୍କରେ ମହାକବି କାଳିଦାସ 'ରଘୁବଂଶ'ରେ ବର୍ଣ୍ଣନା କରି କହିଛନ୍ତି ଯେ ରାଜା ରଘୁ କପିଶା ନଦୀ ଅତିକ୍ରମ କରି ଉତ୍କଳର ଭୂଖଣ୍ଡରେ ପ୍ରବେଶ କରିଥିଲେ । ଏହି ନଦୀ ବିହାରର ରାଂଚିରୁ ବାହାରି ବଙ୍ଗୋପ ସାଗରରେ ମିଶିଛି । 'ମେଦିନାପୁର ଇତିହାସ'ରେ ଐତିହାସିକ ଜେ.ସି ବୋଷ ଉଲ୍ଲେଖ କରିଛନ୍ତି ଯେ ଆଧୁନିକ ଛୋଟନାଗପୁର, ମୟୂରଭଞ୍ଜ, କେଉଁଝର, ମେଦିନୀପୁର ଓ ବାଙ୍କୁଡାର ପଶ୍ଚିମାଂଶ ଉତ୍କ୍ର ଦେଶର ଅନ୍ତର୍ଭୁକ୍ତ ଥିଲା । 'O' "Malley District Gazette"ରେ ସିଂହଭୂମି, ଷଢେଇକଳା, ଖରସୁଆଁ, ଧର୍ମଭୂମି ପ୍ରଭୃତି ଅଂଚଳକୁ ଉତ୍କ୍ର

ଦେଶର ବୋଲି ବର୍ଣ୍ଣନା କରିଛନ୍ତି । ଭାଷାତତ୍ତ୍ୱବିତ୍ ଜର୍ଜ ଜିଅରସନ୍ ତାଙ୍କ ଲିଖିତ Linguistic Survey of Indiaରେ ବର୍ଣ୍ଣନା କରିଛନ୍ତି ଯେ ଓଡିଶା ଉତ୍ତରରେ ହ୍ଲାଦି ନଦୀଠାରୁ ପଶ୍ଚିମରେ କାଳିଘାଇ ନଦୀ ପର୍ଯ୍ୟନ୍ତ ବ୍ୟାପି ରହିଥିଲା । ତାଙ୍କ ବର୍ଣ୍ଣନାନୁସାରେ ଝାଡଗାଁ, ଦାନ୍ତୁନ୍, ଗୋପୀବଲ୍ଲଭପୁର ଓ ବିଜିପୁର ପ୍ରଭୃତି ଅଂଚଳ ଓଡିଆ ଭାଷାଭାଷୀ ଅଂଚଳ ଥିଲା ବୋଲି ସେ ବର୍ଣ୍ଣନା କରିଛନ୍ତି । ଏସବୁ ବର୍ଣ୍ଣନାରୁ ଜଣାପଡେ ଯେ ସିଂହଭୂମି, ମେଦିନୀପୁର, ଷଢେଇକଳା, ଖରସୁଆଁ ପ୍ରଭୃତି ଅଂଚଳ ପ୍ରାଚୀନ ଉତ୍କଳ ଭୂମିର ଅନ୍ତର୍ଭୁକ୍ତ ଥିଲା । ଊନବିଂଶ ଶତାବ୍ଦୀର ଶେଷବେଳକୁ ଆଧୁନିକ ଓଡିଶାର କିଛି ଅଂଶ ବେଙ୍ଗଲ ଓଡିଶା ଡିଭିଜନ୍, ଛୋଟନାଗପୁର ଡିଭିଜନ୍, ସେଂଟ୍ରାଲ ପ୍ରୋଭିଜନସେସ୍ ମାଡ୍ରାସ ପ୍ରେସିଡେନସି ଏବଂ ଗଡଜାତ ମାହାଲ ଏପରି ପାଂଚଗୋଟି ରାଜନୈତିକ ଶାସନ ଅନ୍ତର୍ଭୁକ୍ତ ଥିଲା ।

ଦିନ ଥିଲା ଯେତେବେଳେ ଓଡିଶାର ସୀମା ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା, ବୀର ଓ ଦୁର୍ଦ୍ଧର୍ଷ ଜାତିରୂପେ ଓଡିଆମାନେ ସମଗ୍ର ଦେଶରେ ସୁନାମ ଅର୍ଜନ କରିଥିଲେ । ଓଡିଶାର କଳା, ସଂସ୍କୃତି, ଐତିହ୍ୟ, ଭାସ୍କର୍ଯ୍ୟ ଏବଂ ସାହିତ୍ୟ ଉନ୍ନତିର ଚରମ ସୀମାରେ ଉପନୀତ ହୋଇଥିଲା । ମାତ୍ର କାଳର ରଥ ଚକ ତଳେ ସେହି ଗୌରବମୟ ଐତିହ୍ୟ ପେଷି ହୋଇଯାଇଥିଲା । ନନ୍ଦବଂଶର ପତନ ପରେ କଳିଙ୍ଗ ପୁନର୍ବାର ସ୍ୱାଧୀନତା ଫେରିପାଇଲା ମାତ୍ର ଖ୍ରୀ.ପୂ ୨୬୧ରେ ସମ୍ରାଟ୍ ଅଶୋକ କଳିଙ୍ଗ ଆକ୍ରମଣ କରିଥିଲେ । ଦୁର୍ଦ୍ଧର୍ଷ କଳିଙ୍ଗବାସୀ ମାତୃଭୂମିକୁ ରକ୍ଷା କରିବାପାଇଁ ପ୍ରାଣପଣେ ଯୁଦ୍ଧ କରିଥିଲେ ମଧ ଅଶୋକ ବିଜୟ ଲାଭ କରିଥିଲେ । ଏଇ ଯୁଦ୍ଧ କିନ୍ତୁ ଅଶୋକଙ୍କୁ ଚଣ୍ଡାଶୋକରୁ ଧର୍ମାଶୋକରେ ପରିଣତ କରିଥିଲା । ଏହାପରେ ଖ୍ରୀ.ପୂ ପ୍ରଥମ ଶତାବ୍ଦୀରେ ଚେଦି ବଂଶର ସମ୍ରାଟ୍ ଖାରବେଳ କଳିଙ୍ଗର ଶାସନଭାର ଗ୍ରହଣ କରି ପୁନର୍ବାର ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ରାଜ୍ୟ ଜୟ କରି ହୃତଗୌରବକୁ ଫେରାଇ ଆଣିଥିଲେ । ଏହିପରିଭାବେ ୩୪୨ରେ ସମୁଦ୍ରଗୁପ୍ତ, ୬୧୦ଖ୍ରୀଷ୍ଟାବ୍ଦରେ ଗୌଡ ଦେଶର ରାଜା ଶଶାଙ୍କ ଓଡିଶାରେ ସାମ୍ରାଜ୍ୟ ବିସ୍ତାର କରିଥିଲେ । ତତ୍ପରେ କେଶରୀ ବଂଶର ରାଜାମାନେ ଶାସନଭାର ଗ୍ରହଣ କରି ଓଡିଶାର ବହୁ ଉନ୍ନତିମୂଳକ କାର୍ଯ୍ୟ କରିଥିଲେ । ସର୍ବଶେଷରେ ଯେତେବେଳେ ୧୮୦୩ ମସିହାରେ ଓଡିଶା ଇଂରେଜ ଶାସନାଧୀନ ହେଲା ଯାହା ପୂର୍ବରୁ କୁହାଯାଇଛି । ସେମାନଙ୍କ ସମୟରେ ଓଡିଶାର, ସାମାଜିକ, ଆର୍ଥନୀତିକ, ରାଜନୀତିକ ଓ ସାଂସ୍କୃତିକ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇପଡିଥିଲା । ସର୍ବଶେଷରେ ଉତ୍କଳଗୌରବ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁ ଦାସ, ପାରଳା ମହାରାଜା କୃଷ୍ଣ ଚନ୍ଦ୍ର, ମୟୂରଭଂଜ ରାଜା ଶ୍ରୀରାମଚନ୍ଦ୍ର ପ୍ରଭୃତି ବରପୁତ୍ରମାନଙ୍କ ପ୍ରଚେଷ୍ଟାରେ ୧୯୩୬ ମସିହା ଅପ୍ରେଲ ପହିଲା ତାରିଖରେ ଓଡିଶା ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠିତ ହେଲା । ଉତ୍କଳର ଏକତ୍ରିକରଣରେ ଯେଉଁ ଯୋଗଜନ୍ମା ମନୀଷୀଗଣ ଆପ୍ରାଣ ଉଦ୍ୟମ କରିଥିଲେ, ସେମାନଙ୍କ ମଧ୍ୟରେ ଉତ୍କଳଗୌରବ ମଧୁସୂଦନ ଥିଲେ ଅଗ୍ରଗଣ୍ୟ । ୧୮୪୮ ମସିହା ଅପ୍ରେଲ ୨୮ ତାରିଖରେ କଟକ ଜିଲ୍ଲାର ସତ୍ୟଭାମାପୁରରେ ସେ ଜନ୍ମ ଗ୍ରହଣ କରିଥିଲେ । ୧୮୬୬ ଖ୍ରୀଷ୍ଟାବ୍ଦରେ ଉଚ୍ଚଶିକ୍ଷାଲାଭ କରିବା ପାଇଁ ସେ କଲିକତା ଯାଇ ବି.ଏ ଏବଂ ପରେ ଏମ୍.ଏ ପାଶ୍ କଲେ । ମାତୃଭୂମିର ସେବାରେ ପ୍ରାଣୋତ୍ସର୍ଗ କରିବା ପାଇଁ ସେ ୧୮୮୧ ମସିହାରେ ଓଡିଶାକୁ ପ୍ରତ୍ୟାବର୍ତ୍ତନ କଲେ । ଉତ୍କଳରେ ଏହିପରି ଦୁର୍ଦ୍ଦିନ ଦେଖାଦେଇଥିଲା । ଏପରି ଏକ ଘଡିସନ୍ଧି ମୁହୂର୍ତ୍ତରେ ମଧୁବାବୁ ଆବିର୍ଭୂତ ହୋଇ ଏ ଜାତିକୁ ନୂତନ ଦିଗ୍ଦର୍ଶନ ଦେଇଥିଲେ । ସେ ଥିଲେ ଓଡିଶାର ପ୍ରଥମ ବାରିଷ୍ଟର, ପ୍ରଥମ ଓଡିଆ ଗ୍ରାଜୁଏଟ୍, ପ୍ରଥମ ଓଡିଆ ଏମ୍.ଏ, ପ୍ରଥମ ଓଡିଆ ବିଲାତ ଯାତ୍ରୀ, ଓଡିଶାର ପ୍ରଥମ ଏଲ୍.ଏଲ୍.ବି, ପ୍ରଥମ ବିହାର-ଓଡିଶା ବିଧାନ ସଭା ସଦସ୍ୟ, ପ୍ରଥମ ମନ୍ତ୍ରୀ ଏବଂ ଭାଇସରାୟଙ୍କ ପରିଷଦର ପ୍ରଥମ ସଦସ୍ୟ । ଓଡିଆ ଭାଷା ଆନ୍ଦୋଳନର ମୁଖ୍ୟ ପୁରୋଧା, ଲେଖକ ଓ କବି । ତାଙ୍କରି ଉଦ୍ୟମରେ ୧୯୩୬ ମସିହା ଅପ୍ରେଲ ୧ ତାରିଖରେ ଭାଷାଭିତ୍ତିରେ ପ୍ରଥମ ଭାରତୀୟ ରାଜ୍ୟଭାବେ ଓଡିଶା ପ୍ରତିଷ୍ଠା ହୋଇଥିଲା । ତାଙ୍କ ଜୀବନ କାହାଣୀ ଥିଲା ଉତ୍କଳର ଅର୍ଦ୍ଧଶତାବ୍ଦୀର ଇତିହାସ । ତାଙ୍କର ବଳିଷ୍ଠ ନେତୃତ୍ୱରେ ଉତ୍କଳ ସମ୍ମିଳନୀ ଗଠିତ ହେଲା ।

ମଧୁବାବୁଙ୍କ ଆପ୍ରାଣ ଚେଷ୍ଟାରେ ସମ୍ବଲପୁର ଓଡିଶାରେ ମିଶିଲା । ୧୯୧୩ରୁ ୧୯୨୩ ମସିହା ପର୍ଯ୍ୟନ୍ତ

ମଧୁବାବୁ ବିହାର ଓଡିଶା ପ୍ରଦେଶର କାଉନସିଲର ସଭ୍ୟଭାବେ ମନ୍ତ୍ରୀ ପଦରେ ଅଧିଷ୍ଠିତ ହୋଇଥିଲେ । ସେ ୧୯୧୭ରେ ଭାରତର ସଚିବ ମଣ୍ଟେଗୁ ଓ ଚେମସ୍‌ଫୋର୍ଡଙ୍କ ସହିତ ସାକ୍ଷାତ୍ କରି ଓଡିଶା ପ୍ରଦେଶ ଗଠନ ପାଇଁ ଦୃଢ ଦାବୀ ଉପସ୍ଥାପିତ କରିଥିଲେ । ୧୯୨୭ ସାଲରେ ସାଇମନ୍ କମିଶନ ଉତ୍କଳୀୟମାନଙ୍କ ଦାବୀ ଯଥାର୍ଥ ବୋଲି ହୃଦୟଙ୍ଗମ କଲେ । ୧୯୩୧ ସାଲରେ 'ଓଡ୍‌ନେଲ' କମିଟି ମାଧ୍ୟମରେ ସରକାର ଓଡିଶାର ନ୍ୟାଯ୍ୟ ଦାବି ସମ୍ପର୍କରେ ଅନୁସନ୍ଧାନ କରି ୧୯୩୬ ମସିହା ଅପ୍ରେଲ ପହିଲାରେ ମଧୁବାବୁଙ୍କ ସ୍ୱପ୍ନର ଓଡିଶାକୁ ଏକ ସ୍ୱତନ୍ତ୍ର ରାଜ୍ୟର ସମ୍ମାନ ପ୍ରଦାନ କରିଥିଲେ । ଏହି ଉତ୍କଳର ଏକତ୍ରିକରଣରେ ଗୋପବନ୍ଧୁଙ୍କ ଦାନ ଥିଲା ଅତୁଳନୀୟ । ବାଲ୍ୟକାଳରୁ ଦେଶ, ଜାତି ଓ ସମାଜ କଥା ନିରନ୍ତର ଭାବୁଥିଲେ । ସଂକୀର୍ଣ୍ଣତା ଓ ସ୍ୱାର୍ଥପରତାରୁ ସଦାସର୍ବଦା ଊର୍ଦ୍ଧ୍ୱରେ ରହି ସେବାରେ ବ୍ରତୀ ଥିଲେ । ବିଚ୍ଛିନ୍ନାଚଂଳରେ ସଂଗଠନ କରି ଓଡିଆ ଭାଷାଭାଷୀମାନଙ୍କୁ ଏକତ୍ରିକରଣ ପାଇଁ ସେ ଆହ୍ୱାନ ଦେଇ ମଧୁବାବୁଙ୍କ କାର୍ଯ୍ୟରେ ସହାୟତା କରିଥିଲେ । ଏହି ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ଅନ୍ୟ ଏକ ବିନ୍ଧାଣି ଥିଲେ ପାରଳା ମହାରାଜା ଗଜପତି କୃଷ୍ଣଚନ୍ଦ୍ର ଦେବ । ୧୯୩୦ ମସିହାରେ ଲଣ୍ଡନଠାରେ ଅନୁଷ୍ଠିତ ଗୋଲଟେବୁଲ ବୈଠକରେ ଓଡିଶାର ପ୍ରତିନିଧିତ୍ୱ କରିବା ପାଇଁ ବିହାର ଓଡିଶା ସରକାର ତାଙ୍କ ନାମ ସୁପାରିସ କରିଥିଲେ । ମାତ୍ର ସେ ଲଣ୍ଡନରେ ପହଚିଂବା ପୂର୍ବରୁ ଗୋଲଟେବୁଲ କାର୍ଯ୍ୟସୂଚୀ ପ୍ରସ୍ତୁତ ହୋଇସାରିଥିଲା । ଫଳରେ ସେ ଦାବୀ ଉପସ୍ଥାପିତ କରିପାରି ନଥିଲେ । ୧୯୩୧ ମସିହା ସାର୍ ଉଇଲିୟମ ଡୋଓ୍ୱେଟଙ୍କ ଅଧ୍ୟକ୍ଷତାରେ ଏକ ବୈଠକ ଅନୁଷ୍ଠିତ ହୋଇ ସିନ୍ଧୁ ପ୍ରଦେଶ ଗଠନ ସମ୍ପର୍କରେ ସବ୍ କମିଟି ରିପୋର୍ଟ ବିଚାର ହେବାର କାର୍ଯ୍ୟକ୍ରମ ଥିଲା । ଉକ୍ତ ବୈଠକରେ ଓଡିଆମାନଙ୍କର ନ୍ୟାଯ୍ୟ ଦାବୀ ଉପସ୍ଥାପିତ କରିବା ପାଇଁ ସେ ବିଲାତ ପ୍ରଧାନମନ୍ତ୍ରୀଙ୍କୁ ଚିଠି ଲେଖିଲେ । ତାଙ୍କ ଅନୁମତି କ୍ରମେ କୃଷ୍ଣଚନ୍ଦ୍ର ଓଡିଆମାନଙ୍କର ଦୁରବସ୍ଥା ଓ ସ୍ୱତନ୍ତ୍ର ପ୍ରଦେଶ ଗଠନର ଗୁରୁତ୍ୱ ସମ୍ପର୍କରେ ବ୍ରିଟିଶ କର୍ତ୍ତୃପକ୍ଷଙ୍କୁ ପ୍ରଭାବିତ କରିବାରେ ସମର୍ଥ ହୋଇଥିଲେ । ଏହି ମହାନ କାର୍ଯ୍ୟକୁ ସଫଳ ରୂପାୟନ ଦେବାରେ ଅନ୍ୟ ଯେଉଁମାନଙ୍କର ଅତୁଳନୀୟ ଅବଦାନ ଥିଲା, ସେମାନେ ଥିଲେ ଖଲିକୋଟର ରାଜା ସାହେବ ହରିହର ମର୍ଦ୍ଦରାଜ, ତାଙ୍କ ସୁଯୋଗ୍ୟ ପୁତ୍ର ରାମଚନ୍ଦ୍ର ମର୍ଦ୍ଦରାଜ । ଏମାନେ ମଧୁସୂଦନ, ରାଧାନାଥ ଓ ଫକୀର ମୋହନଙ୍କ ସଂସ୍ପର୍ଶରେ ଆସିଲେ । ତାଙ୍କ ଜାତୀୟତାର ଆଭାସ ପାଇଁ କବି ନୀଳମଣି ବିଦ୍ୟାରତ୍ନ ରମ୍ଭା ଆସିଥିଲେ । ତାଙ୍କ ପ୍ରେରଣାରେ ପ୍ରୋତ୍ସାହିତ ହୋଇ ହରିହର ରମ୍ଭାରେ ଏକ ପ୍ରେସ୍ ସ୍ଥାପନ କରି 'ପ୍ରଜାବନ୍ଧୁ', 'ମଧୁପ' ଓ 'ସଂସ୍କାରକ' ନାମକ ପତ୍ରିକା ପ୍ରକାଶ କରି ଓଡିଆମାନଙ୍କର ନ୍ୟାଯ୍ୟ ଦାବୀ ଦୁଃଖଦୁର୍ଦ୍ଦଶା ଉପସ୍ଥାପନ କଲେ । ସେହିପରି ବାଲେଶ୍ୱର ରାଜା ବୈକୁଣ୍ଠନାଥ ଦେ ମର୍ମେ ମର୍ମେ ଅନୁଭବ କରିଥିଲେ ଯେ ଜାତୀୟ ଚେତନା ଅଭିବୃଦ୍ଧି ପାଇଁ ସମ୍ବାଦପତ୍ରର ଭୂମିକା ଆବଶ୍ୟକ । ତେଣୁ ସେ ୧୮୭୩ ମସିହାରେ 'ସମ୍ବାଦବାହିକା' ପ୍ରକାଶ କଲେ । ତାଙ୍କର ମୂଳଲକ୍ଷ୍ୟ ଥିଲା ଓଡିଆ ଭାଷା ସାହିତ୍ୟକୁ ସମୃଦ୍ଧ କରି ବଙ୍ଗଳାଭାଷା ବିରୋଧରେ ସ୍ୱର ଉତ୍ତୋଳନ କରିବା । ସେ ଓଡିଆ ଭାଷାଭାଷୀ ଅଂଚଳରେ ଏକତ୍ରିକରଣ ପାଇଁ ବଦ୍ଧପରିକର ଥିଲେ । କର୍ମବୀର ଗୌରୀଶଙ୍କର ଥିଲେ ଆଉ ଜଣେ ସୁଯୋଗ୍ୟ ସନ୍ତାନ, ଯାହାଙ୍କ ଆପ୍ରାଣ ଉଦ୍ୟମରେ 'ଉତ୍କଳସଭା' ଅନୁଷ୍ଠାନ ଗଠନ ହେବା ସହ ତାଙ୍କ ସମ୍ପାଦନାର 'ଉତ୍କଳ ଦୀପିକା' ଆତ୍ମ ପ୍ରକାଶ ଲାଭ କରି ଓଡିଆ ଭାଷା ଓ ସାହିତ୍ୟର ଉନ୍ନତି ସାଧନ କରିଥିଲେ ।

ପ୍ରତିବର୍ଷ ସେହି ମହାମନୀଷୀମାନଙ୍କ ଅବଦାନକୁ ମନେ ପକାଇବା ସହ ଆମ ଭାଷା, ଆମ ସଂସ୍କୃତି, ଆମ ପରମ୍ପରାକୁ ଉଜ୍ଜୀବିତ କରିବା ପାଇଁ ଏହି ଅପ୍ରେଲ ପହିଲା ଆମକୁ ପ୍ରେରଣା ଯୋଗାଇ ଥାଏ । ପ୍ରତ୍ୟେକ ଓଡିଆ ଏହି ଦିବସଟିକୁ ମହା ସମାରୋହରେ ପାଳନ କରିଥାନ୍ତି । ରାଜ୍ୟ ସରକାର ମଧ୍ୟ ଏହି ଦିବସଟିକୁ ଆଡମ୍ବର ସହକାରେ ପାଳନ କରିବା ସହ ଉତ୍କଳର ହୃତଗୌରବର ସ୍ମୃତି ଚାରଣ କରିଥାନ୍ତି, ଯେଉଁମାନଙ୍କର ବଳିଷ୍ଠ ଉଦ୍ୟମ ଫଳରେ ଉତ୍କଳ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠିତ ହେଲା ସେହି ମହାମନୀଷୀଙ୍କ ପାଦରେ ଏହି ଲେଖକର ଭକ୍ତିପୂତ ପ୍ରଣିପାତ ।

---

ଗ୍ରନ୍ଥକାର ତଥା ସାମ୍ବାଦିକ
ଖୋର୍ଦ୍ଧା

# ଭାଗବତ ଶରଣାଗତି

ଯମେଶ୍ୱର ରାଉତ

ନମଇଁ ନୃସିଂହ ଚରଣ
ଅନାଦି ପରମ କାରଣ ।
ନମସ୍ତେ ପ୍ରଭୁ ଜଗନ୍ନାଥ
ଯା'ର ଉଦରୁ ଏ ଜଗତ
ସକଳ ତୀର୍ଥ ତୋ ଚରଣେ
ବଦ୍ରିକା ଯିବି କି କାରଣେ ।
ତୋର ଚରଣ ଯୁଗରାଶି
କୋଟି ବଦ୍ରିକା କୋଟି କାଶୀ ।
ଆଶ୍ରମ ନାମେ ବଦରିକା
ସେ କି ତୋ ଚରଣୁ ଅଧିକା ।
ଯାହାର ପାଦରଜ ପାଇ
ଆନନ୍ଦେ ଶଙ୍କର ନାଚଇ ।
ଯେ ପ୍ରଭୁ ବ୍ରହ୍ମାଣ୍ଡ କାରଣ
ବ୍ରହ୍ମା ଯା ଚିନ୍ତଇ ଚରଣ ।
କମଳା ସେବେ ଯା ଚରଣ
ମୁଁ ତାରେ ପଶିବି ଶରଣ ।
ଅଶେଷ ଜନ୍ମ ପୁଣ୍ୟଫଳେ
ପ୍ରାଣୀ ତୋ ଚରଣ କମଳେ ।
ମନୁଷ୍ୟ ଜନ୍ମର ଏ ଲାଭ
ଭକତି କୃଷ୍ଣ ପାଦେ ଲଭ ।
କୃଷ୍ଣ ପାଦୁକା ମୁଣ୍ଡେ ନେଇ
ଉଦ୍ଧବ ତାହା ହୃଦେ ଧରି ।
କୃଷ୍ଣର ଅଭୟ ଚରଣ
ପ୍ରାଣୀର ମୋକ୍ଷର କାରଣ ।
ହରିର ଅଭୟ ଚରଣ
ଅଶେଷ ତୀର୍ଥର କାରଣ ।
ହରି ଚରଣେ ଭକ୍ତି ନୋହିଁ
ତାହାର ବ୍ରହ୍ମେ ରତି କାହିଁ ।
ବିଷ୍ଣୁର ଅଭୟ ଚରଣ
ମଙ୍ଗଳ କୁଶଳ କଲ୍ୟାଣ ।
ହରି ଚରଣ ସେବା ଅର୍ଥେ
ଯେବା ଉପାୟ ବେଦ ପଥେ ।

ଜୀବର ସ୍ୱଧର୍ମ ଏ ଭାବ
ହରି ଚରଣେ ସମର୍ପିବ ।
ସେ ହରି ପାଦ ହୃଦେ ଧରି
ଭକତ ଦୁସ୍ତରୁ ନିସରୀ ।
ଯେ ତୋର ଚରଣ ସେବନ୍ତି
ସକଳ ଧର୍ମ ସେ ଲଭନ୍ତି ।
ସେ ନାରାୟଣ ପଦ୍ମପାଦ
ହରଇ ବିଷୟା ବିଷାଦ ।
ସେ ପାଦ ଯାକୁ ଦୟା କରେ
ଭକ୍ତି ଜନ୍ମଇ ତା ହୃଦରେ ।
ଯେ ଭଜେ ତାହାଙ୍କ ଚରଣେ
ବୈକୁଣ୍ଠ ସମ୍ପୂର୍ଣ୍ଣ ଲକ୍ଷଣେ ।
ଭକ୍ତିରେ ପ୍ରୀତି ନାହିଁ ଯାର
ସେ କାହିଁ ଜାଣେ ମୋ ପୟର ।
ଯେ ପାଦ ଭବ ସିନ୍ଧୁ ସେତୁ
ଅଶୁଭ ଗଣ ଧ୍ୱଂସ କେତୁ ।
ଭବ ଜଳଧି ସୁଖ ନାବ
ତୋର ଚରଣ ପଦ୍ମନାଭ ।
ତୋହର ପାଦେ ଯାର ମନ
ସେ ପ୍ରାଣୀ ଭକତ ପ୍ରଧାନ ।
ଯେ ମୋର ଚରଣ ଚିନ୍ତଇ
ସଂସାରେ ତା'ର ଭୟ ନାହିଁ ।
ତୋ ପାଦ ସେବା ପରି ହରି
କେ ପାରେ ଭବସିନ୍ଧୁ ତରି ।
ଏ ମାୟା ପ୍ରବଞ୍ଚ ଜଗତ
ତୋର ଚରଣ ମାତ୍ର ସତ୍ୟ ।
ଉତ୍ତମ ଶ୍ଳୋକ ଯେ ଗୋବିନ୍ଦ
ତାହାଙ୍କ ଚରଣାର ବିନ୍ଦ ।
ଗୋବିନ୍ଦ ଗୋବିନ୍ଦ ଗୋବିନ୍ଦ
ପଦୁ ଗଳୁଛି ମକରନ୍ଦ ।
ସେ ମକରନ୍ଦ ପାନ କରି
ହେଲେ ତରିଲେ ବ୍ରଜନାରୀ ।

ହରି ଚରଣେ ଯାର ଶ୍ରଦ୍ଧା
ତାକୁ ନ ଲାଗେ ଭବ ବାଧା ।
ଯାହାର ଅଭୟ ଚରଣ
ଭକ୍ତ ଜନଙ୍କର ଶରଣ ।
ତୋହର ଚତୁର ଚରଣ
ପ୍ରାଣୀଙ୍କ ସୁଖର କାରଣ ।
ଯା ପାଦ ପଦ୍ମ ଜ୍ଞାନ ରସେ
ମୁନିଏ ପୂଜନ୍ତି ହରଷେ ।
ଏ ପାଦତଳେ ତପ ଦାହି
ମୋତେ ପାଇବୁ ଅନ୍ତେ ତୁହି ।
ତୋ ପାଦେ ସର୍ବ ସ୍ଥିତିମାନ
ନମସ୍ତେ ପ୍ରଭୁ ଭଗବାନ ।
ତୋର ଚରଣ କଳ୍ପଦ୍ରୁମ
କି ଆଶେ ଲଭେ ପ୍ରାଣୀଶ୍ରମ ।
ତୁମ୍ଭେ ଯେ ବ୍ରହ୍ମା, ବିଷ୍ଣୁ, ହର
ମୁଁ ତୁମ୍ଭ ଚରଣେ କିଙ୍କର ।
କୃଷ୍ଣ ଚରଣେ ଯାର ମନ
ସଂସାରେ ଶ୍ରେଷ୍ଠ ସେହି ଜନ ।
ଯାହାର ପାଦେ ଆଶ୍ରେ କଲେ
ସଙ୍କଟୁ ତରେ ପ୍ରାଣୀ ଭଲେ ।
ଯେ କୃଷ୍ଣ ପଦରଜ ନୀର
ସକଳ ତୀର୍ଥଙ୍କର ଘର ।
ବିଧାତା ଆଦି ସର୍ବ ଦେବା
ତୋର ଚରଣେ ତାଙ୍କ ସେବା ।
ଗୋବିନ୍ଦ ଚରଣାର ବିନ୍ଦ
ସ୍ୱାଦୁ ସୁଗନ୍ଧ ମକରନ୍ଦ ।
ସେ ପଦ୍ମପାଦ ମୁଖ ହେଜି
ମୁନିଏ ଭକ୍ତିଭାବେ ଭଜି ।
ହରି ଚରଣେ ସେବା କର
ସଂସାରୁ ଆତ୍ମାକୁ ଉଦ୍ଧର ।
ବିଷ୍ଣୁର ଅଭୟ ଚରଣ
ଅଶେଷ ମଙ୍ଗଳ କାରଣ ।
ବେଦରୁ ଯେତେ କର୍ମଫଳ
ସେ ଥାଇ ତୋ ଚରଣ ତଳ ।
ଏଣୁ ତୋ ପାଦେ ଯାର ଆଶ
ନ ଲାଗେ ଭବବନ୍ଧ ତ୍ରାସ ।

ଯାବତ ଗୋବିନ୍ଦ ଚରଣ
ଏ ଜୀବ ନପଶେ ଶରଣ ।
ତାବତ ଆତ୍ମା ନୁହେଁ ସୁଖୀ
ନିରତେ ତାପତ୍ରୟେ ଦୁଃଖୀ ।
ଯାହାର ପଦ୍ମପାଦ ରଜ
ଅଖିଳ ଜନଙ୍କ ଐଶ୍ୱର୍ଯ୍ୟ ।
ପବିତ୍ର କରେ ମନ ସ୍ୱାର୍ଥ
ଏଣୁ ସେ ତୀର୍ଥଙ୍କର ତୀର୍ଥ ।
ତା' ପାଦ ଗଙ୍ଗାଜଳ ଯେହ୍ନେ
ତାରଇ ସ୍ନାନ ପିଣ୍ଡଦାନେ ।
ନାମ ମାତ୍ରକେ ପାପ ନାଶେ
ତାରଇ ସେ ତିନି ପୁରୁଷେ ।
ଧନ୍ୟ ତାହାର ଜନ୍ମ ସାର
ମୁକୁନ୍ଦ ପାଦେ ଭକ୍ତି ଯାର ।
ଭାରତେ ମାନବ ଜନ୍ମରେ
ସେ ପ୍ରାଣୀ ଶ୍ରେଷ୍ଠ ସର୍ବଠାରେ ।
ଶ୍ରୀହରି ପାଦେ ଚିତ୍ତ ଯାର
ସନ୍ତୋଷ ସମ ସାଧୁ ଧୀର ।
ସେ ପ୍ରାଣୀ ଯେ ପୁରେ ପଶନ୍ତି
ମାୟା ବନ୍ଧନୁ ସେ ତରନ୍ତି ।
ସେ ପାଦ ତାରେ ଦୟା କରେ
ପ୍ରସନ୍ନେ ସର୍ବ ଦୁଃଖ ହରେ ।
ସେବାନୁରୂପେ ଫଳ ଦେଇ
ପର ଅପର ତା'ର ନାହିଁ ।
ପାଦ ପଙ୍କଜଟି ଯାହାର
ଆଶ୍ରୟ କରିଣ ଶଙ୍କର ।
ସର୍ବ ବିଷୟକୁ ଛାଡ଼ିଲେ
ତକ୍ଷଣେ ସେ ପଦ ଲଭିଲେ ।
ଶୁଣ ସୁଜନେ କୃଷ୍ଣ ଗୀତ
ଗୋବିନ୍ଦ ପାଦେ ଦେଇ ଚିତ୍ତ ।
ଯୁଧିଷ୍ଠି ପାଦେ ଆଶ୍ରା କଲେ
ସ୍ୱଦେହେ ସ୍ୱର୍ଗରେ ବସିଲେ ।

ମଦରଙ୍ଗ, ଗୋପ
ଜିଲ୍ଲା- ପୁରୀ

# ଫକୀରମୋହନ: ଓଡ଼ିଆ ଜାତିର ଆଲୋକବର୍ତ୍ତିକା

**ବିମଳ କୁମାର ରାଉଳ**

ଚତୁର୍ଦ୍ଦଶ ଶତାବ୍ଦୀର ଆଦ୍ୟପାଦରେ ଫ୍ଲରେନ୍ସରୁ ଜନ୍ମ ନେଇଥିବା ରେନେସାଁ ବା ପୁନର୍ଜାଗରଣ ଏକଦା ସାରା ୟୁରୋପର ଆଲୋକବର୍ତ୍ତିକା ସାଜିଥିଲା । କଳା, ସାହିତ୍ୟ, ରାଜନୀତି ଓ ବିଜ୍ଞାନରେ ଆସିଥିଲା ଅଭୂତପୂର୍ବ ପରିବର୍ତ୍ତନ । ଧୀରେ ଧୀରେ ଏହି ପରିବର୍ତ୍ତନର ସ୍ରୋତରେ ସାରା ବିଶ୍ୱ ଆଲୋକିତ ହେଲା । ଚତୁର୍ଦ୍ଦଶରୁ ସପ୍ତଦଶ ଶତାବ୍ଦୀ ମଧ୍ୟରେ ଜ୍ଞାନ, ବିଜ୍ଞାନ ଓ ନୂଆ ଦର୍ଶନ ଭୌଗଳିକ ସୀମା ସରହଦ ଡେଇଁ ବିଶ୍ୱମୁଖୀ ହେଲା ।

ଷୋଡ଼ଶ ଶତାବ୍ଦୀରୁ ଇଷ୍ଟଇଣ୍ଡିଆ କମ୍ପାନୀ ମାଧ୍ୟମରେ ଶେଷରେ ସାରା ଭାରତବର୍ଷ ବ୍ରିଟିଶ ଶାସନାଧୀନ ହୋଇଥିଲା । ଗୋଟିଏ ଶାସନ କିନ୍ତୁ ବିକ୍ଷିପ୍ତ ଭାରତବର୍ଷ ଶାସନବ୍ୟବସ୍ଥା ପରିଚାଳନାରେ ଘୋର ବାଧକ ସାଜିଲା । ତେଣୁ ସାରା ଭାରତକୁ ଏକକ ଶାସନ ବ୍ୟବସ୍ଥାରେ ଯୋଡ଼ି ରଖିବା ପାଇଁ ଆରମ୍ଭ ହେବା ଯୋଗାଯୋଗ ସୁବିଧା ଏବଂ ପ୍ରଚଳନ କରାଗଲା ଆଧୁନିକ ଇଂରାଜୀ ଶିକ୍ଷା, ଯେଉଁ ଯୋଗାଯୋଗ ଓ ଶିକ୍ଷା ବ୍ୟବସ୍ଥା ସଂପୂର୍ଣ୍ଣ ଭାବରେ ୟୁରୋପୀୟ ଢ଼ାଞ୍ଚାରେ ଚାଲିଲା । ଏବେ କୋଲକାତା ସହର ସେତେବେଳେ ଭାରତରେ ପୁନର୍ଜାଗରଣର ପ୍ରମୁଖ ସ୍ଥଳ ହୋଇ ଉଭା ହେଲା ।

ଊନବିଂଶ ଶତକର ଆଦ୍ୟପାଦରେ ଓଡ଼ିଶା ବ୍ରିଟିଶ ଶାସନାଧୀନ ହେବା ପରେ ଓଡ଼ିଶାକୁ ମିଶନାରୀମାନେ ଆସିଲେ । ସାଙ୍ଗରେ ଛାପାକଳ ଓ ଆଧୁନିକ ଶିକ୍ଷା ଆସିଲା, ମାତ୍ର ଧର୍ମନଷ୍ଟ ହେବା ଭୟରେ ଲୋକେ ଏହାଠୁ ଦୂରେଇ ରହିଲେ । ପର୍ଯ୍ୟାୟକ୍ରମିକ ଭାବେ ଇଂରେଜମାନେ ପ୍ରତିଷ୍ଠା କଲେ ସ୍କୁଲ ଓ କଲେଜ । ଆଧୁନିକ ଶିକ୍ଷା ଧୀରେ ଧୀରେ ଓଡ଼ିଆଙ୍କ ପ୍ରାଣଙ୍କୁ ଛୁଇଁଲା । ସୃଷ୍ଟି ହେଲେ ଯୁବ ଉଦ୍ଦାମୀ



ଶିକ୍ଷିତ ଗୋଷ୍ଠୀ, ଯେଉଁମାନେ ଓଡ଼ିଶାରେ ପୁନର୍ଜାଗରଣର ବାହକ ସାଜିଲେ ।

କିନ୍ତୁ ଫକୀରମୋହନ ସେନାପତି ଥିଲେ ବ୍ୟତିକ୍ରମ । ବହୁ ସମସ୍ୟା ମଧ୍ୟରେ ସେ ସ୍ୱଳ୍ପ ବିଦ୍ୟା ଅଧ୍ୟୟନର ସୁଯୋଗ ପାଇଥିଲେ । ସେଥିରେ ପୁଣି ଧାରାବାହିକତା ନଥିଲା । ମାତୃଭାଷା ଓ ମାତୃଭୂମି ପ୍ରୀତି, ଦୂରଦୃଷ୍ଟିତା

ଏବଂ କଠିନ ଅଧିବସାୟ ଦିନେ ଫକୀରମୋହନଙ୍କୁ ଓଡ଼ିଆ ଜାତିର ସେନାପତି ଆସନରେ ଅଧିଷ୍ଠିତ କରାଇଥିଲା । ଭାଷା, ସାହିତ୍ୟ ଓ ଗଣମାଧ୍ୟମ ପ୍ରଭୃତିରେ ସେ ନୂଆ ପରୀକ୍ଷାନିରୀକ୍ଷା ଓ ଅଧ୍ୟୟନର ସୂତ୍ରପାତ ଘଟାଇଥିଲେ । ୟୁରୋପୀୟ ପୁନର୍ଜାଗରଣ ସ୍ରୋତ ଯଦିଓ ଭାରତରେ ବହୁ ବିଳମ୍ବରେ ପ୍ରଭାବିତ ହୋଇଥିଲା, ସେହି ସ୍ରୋତ ଓଡ଼ିଶାରେ ପ୍ରଭାବିତ ହେଲା ବେଳକୁ ଆମ ପଡ଼ୋଶୀ ବଙ୍ଗାଳୀମାନେ ବହୁ ଆଗକୁ ଚାଲି ଯାଇଥିଲେ । ବହୁ ବିଳମ୍ବରେ ହେଲେବି ପୁନର୍ଜାଗରଣର ସ୍ରୋତକୁ ଅଧିକ ପ୍ରଖର କରାଇ ଓଡ଼ିଆ ଜାତିକୁ ଏକତା ସୂତ୍ରରେ ବାନ୍ଧି ରଖି ଓଡ଼ିଆ ଜାତୀୟତାକୁ ପୁନର୍ଜୀବିତ କରାଇବାରେ ଫକୀରମୋହନଙ୍କ ଭୂମିକା ବେଶ ଗୁରୁତ୍ୱପୂର୍ଣ୍ଣ ଥିଲା ।

ଊନବିଂଶ ଶତକର ମଧ୍ୟଭାଗରେ (୧୮୪୩) ଫକୀରମୋହନଙ୍କ ଜନ୍ମ । ଯେଉଁ ସମୟ ଓଡ଼ିଆ ଜାତି, ଓଡ଼ିଆ ଭାଷା ଏବଂ ଓଡ଼ିଶାର ସ୍ଥିତି ପାଇଁ ଥିଲା ସଙ୍କଟର ସମୟ । ବର୍ଷକୁ ବର୍ଷ ଦୁର୍ଭିକ୍ଷର ଜ୍ୱାଳାରେ ଏ ଜାତି ଏକ ପ୍ରକାର କାଙ୍ଗାଳ ହୋଇଯାଇଥିଲା । ହା ଅନ୍ନ..ର ଆର୍ତ୍ତନାଦରେ ଓଡ଼ିଆ ଜାତିର ଅସ୍ତିତ୍ୱ ଏକ ପ୍ରକାର ବିଲୁପ୍ତ ହେବାରେ ଲାଗିଥିଲା । ଏତିକିବେଳେ ପଡ଼ୋଶୀଙ୍କ ଭାଷା ଓ ଭୂଗୋଳ ଚକ୍ରାନ୍ତରେ ଜାତିର ଅସ୍ମିତା ଲିଭି ଲିଭି ଯାଉଥିଲା ।

ସେତେବେଳେ ଫକୀରମୋହନ ଏ ଜାତିର ଦୁର୍ଗତିକୁ ଅତି ନିକଟରୁ ଦେଖିଥିଲେ । ପାରିବାରିକ ସମସ୍ୟା ମଧ୍ୟରେ ଜର୍ଜରିତ ହୋଇ ଦ୍ୱିତୀୟ ଶ୍ରେଣୀରୁ ପାଠ ପଢ଼ା ଛାଡ଼ି ଶିକ୍ଷକତା ଆରମ୍ଭ କରିଥିଲେ । ଶିକ୍ଷକତା ସହ ଇଂରାଜୀ, ସଂସ୍କୃତ ଓ ବଙ୍ଗଳା ଭାଷା ଶିଖିଲେ । ବିଭିନ୍ନ ପୁସ୍ତକ ଅଧ୍ୟୟନ କରି ପାଠ୍ୟପୁସ୍ତକ ଲେଖିଲେ ଏବଂ ପରେ ଅନୁବାଦକ ସାଜିଲେ । ଶିକ୍ଷକତା, ପରେ ଦେବାନ, ମ୍ୟାନେଜର ବୃତ୍ତିରେ ଅବତୀର୍ଣ୍ଣ ହୋଇ ଓଡ଼ିଶାର ବିଭିନ୍ନ ସ୍ଥାନ ବୁଲିଥିଲେ ଏବଂ ଓଡ଼ିଶାର ସମସ୍ୟା ଓ ସଂକଟକୁ ପ୍ରତ୍ୟକ୍ଷ ଭାବେ ହୃଦୟଙ୍ଗମ କରିଥିଲେ, ଯାହା ତାଙ୍କୁ ଏ ଜାତିର ଆଲୋକବର୍ତ୍ତିକା ସଜାଇ ଥିଲା ।

ମିଶନାରୀମାନଙ୍କ ପରେ ଗୌରୀ ଶଙ୍କର ରାୟଙ୍କ ଦ୍ୱାରା ପ୍ରକାଶ ହେଲା 'ଉତ୍କଳଦୀପିକା' । ଏହାର ଦୁଇ ବର୍ଷ ପରେ ବାଲେଶ୍ୱରରେ ଫକୀରମୋହନ ପ୍ରଥମ ଛାପାକଳ ପ୍ରତିଷ୍ଠା କରି 'ବାଲେଶ୍ୱର ସମ୍ବାଦବାହିକା' ପ୍ରକାଶ କଲେ । ସେ ନିଜସ୍ୱ ଉଦ୍ୟମରେ କୋଲକାତାରୁ ବଳଦ ଗାଡ଼ିରେ ଛାପାକଳ ବୋହି ଆଣି ବାଲେଶ୍ୱରରେ ପ୍ରତିଷ୍ଠା କରିଥିଲେ, ଯାହାର ସମ୍ପାଦକ ଥିଲେ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ । 'ଉତ୍କଳ ଦୀପିକା' ଓ 'ସମ୍ବାଦବାହିକା' ସେସମୟର ଦୁଇଟି ଜାଗ୍ରତ ପ୍ରହରୀ ଭାବେ ଉଭା ହୋଇଥିଲା । କିନ୍ତୁ 'ସମ୍ବାଦବାହିକା' ବେଶିଦିନ ତିଷ୍ଠି ପାରି ନଥିଲା । ଅଳ୍ପକାଳ ମଧ୍ୟରେ ତାହା ବନ୍ଦ ହୋଇଯାଇଥିଲା । ତଥାପି ଫକୀରମୋହନଙ୍କ ଏ ପ୍ରୟାସ ଅନ୍ୟ ଓଡ଼ିଆମାନଙ୍କୁ ଛାପାକଳ ପ୍ରତିଷ୍ଠା ଏବଂ ସମ୍ବାଦପତ୍ର ଓ ପତ୍ରପତ୍ରିକା ପ୍ରକାଶ କରିବା ଦିଗରେ ଅନୁପ୍ରାଣିତ କରିଥିଲା । ତେଣୁ ପରବର୍ତ୍ତୀ ସମୟରେ ଊନବିଂଶ ଶତକର ଶେଷ ଭାଗ ସୁଦ୍ଧା ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ବହୁ ପତ୍ରପତ୍ରିକାର ବିକାଶ ଘଟିଥିଲା । ଓଡ଼ିଆଙ୍କ ମଧ୍ୟରେ ଭାଷା ଓ ସାହିତ୍ୟ ସଚେତନତା ସାଙ୍ଗକୁ ଓଡ଼ିଆ ଜାତୀୟତାର ପୁନଃ ଉନ୍ମେଷ ଘଟାଇବାରେ ପ୍ରମୁଖ ଭୂମିକା ନିର୍ବାହ କରିଥିଲା ।

ଗୋଟିଏ ପଟେ ନ'ଅଙ୍କ ଦୁର୍ଭିକ୍ଷର ଜ୍ୱାଳା ପୁଣି ଅନ୍ୟପଟେ ମାତୃଭାଷା ବିଲୋପର ଚକ୍ରାନ୍ତ ଏ ଜାତିକୁ ଘୋର ବିପତ୍ତି ମଧ୍ୟକୁ ଟାଣି ଆଣିଥିଲା । ଏତିକିବେଳେ ଫକୀରମୋହନ ସାଜିଥିଲେ ଏ ଜାତିର ସେନାପତି । ସମାଲୋଚକ ଚିତ୍ତରଞ୍ଜନ ଦାସଙ୍କ ମତରେ, 'ଫକୀରମୋହନ ତାଙ୍କର ପ୍ରଥମ ପୁସ୍ତକ 'ଜୀବନଚରିତ'ର ମୁଖବନ୍ଧରେ ଲେଖିଥିଲେ ଯେ, ଓଡ଼ିଆ ଓ ବଙ୍ଗଳା ଭାଷା ମଧ୍ୟରେ ସେମିତି କିଛି ବିଶେଷ ପ୍ରଭେଦ ନାହିଁ । ଅଳ୍ପ କିଛି ବିଭକ୍ତି ଓ ପ୍ରତ୍ୟୟ ବଦଳାଇ ଦେଲେ ଓଡ଼ିଆକୁ ବଙ୍ଗଳା ଏବଂ ବଙ୍ଗଳାକୁ ଓଡ଼ିଆ କରିଦେଇ ହେବ । ଏହି ମନ୍ତବ୍ୟକୁ ଉଦ୍ଧାର କରି ବଙ୍ଗାଳୀମାନେ ଓଡ଼ିଆ ଗୋଟେ ସ୍ୱତନ୍ତ୍ର ଭାଷା ନୁହଁ ବୋଲି କହିଲେ । ଜନ୍ ବୀମ୍ସ ସାହେବଙ୍କ ସହ ଫକୀରମୋହନଙ୍କ ସୁସଂପର୍କ ଥିଲା ।

କୋଲକାତା ଏସିଆଟିକ୍ ସୋସାଇଟିରେ ବୀମ୍ସ ସାହେବ ଏକ ଭାଷାତାତ୍ତ୍ୱିକ ପ୍ରବନ୍ଧ ଉପସ୍ଥାପିତ କରି ଓଡ଼ିଆ ଭାଷାର କ'ଣ ସ୍ୱତନ୍ତ୍ରତା ରହିଛି, ତାହା ବୁଝାଇ ଦେଲେ । ଓଡ଼ିଆ ଭାଷା ବିଲୋପରୁ ରକ୍ଷା ପାଇଲା । ଶାସକମାନେ ମଧ୍ୟ ଏହାକୁ ସ୍ୱୀକୃତି ଦେଲେ ।'

ସାହିତ୍ୟ ସୃଷ୍ଟିର ପ୍ରାରମ୍ଭିକ ଜୀବନରେ ଫକୀରମୋହନ କବିତା ଲେଖିବା ଆରମ୍ଭ କରିଥିଲେ । ସମାଲୋଚକମାନଙ୍କ ମତ ଯେ, ତାଙ୍କ ଅଧିକାଂଶ କବିତାରେ ସେମିତି ବିଶେଷ ନୂତନତା ନଥିଲା । ତେଣୁ କବିତା ଅପେକ୍ଷା ତାଙ୍କ ଗଳ୍ପ ଓ ଉପନ୍ୟାସ ଓଡ଼ିଆ ସାହିତ୍ୟରେ ନବଯୁଗର ଅୟମାରମ୍ଭ ଥିଲା । ମାତ୍ର ଫକୀରମୋହନଙ୍କ କବିତା ଲିଖନର ମୁଖ୍ୟ ଉଦ୍ଦେଶ୍ୟ ତାଙ୍କର ପ୍ରତ୍ୟେକ କବିତାରୁ ସ୍ପଷ୍ଟ ବାରିହୋଇ ପଡ଼େ । ସମାଜର ସେତେବେଳର ଅବସ୍ଥା, ଇଂରେଜୀ ଶିକ୍ଷା ଆସିବା ପରେ ସମାଜରେ କିଭଳି ପରିବର୍ତ୍ତନ ଆସିଛି ଏବଂ ଆମ ଲୋକଚରିତ୍ର କେମିତି ବଦଳିଛି ତାହା ତାଙ୍କ କବିତାରୁ ଜଣାପଡ଼େ ।

କେତୋଟି କବିତାର ଦୃଷ୍ଟାନ୍ତ ନେଇ ପାରିବା-

(କ)

'ପଢ଼ ଇଙ୍ଗରେଜୀ କେହି ମନାକରୁ ନାହିଁ
କିନ୍ତୁ ବାପ କାମ କର ଜାତି କୁଳ ଚାହିଁ ।
ଘୃଣା କରୁଅଛ ମାତୃଭାଷା ପଢ଼ିବାକୁ
ହାୟ ହାୟ ଲାଜକଥା କହିବି କାହାକୁ ।'

(ଖ)

'ବିଳାସ ବାସନା ଅନ୍ନ ପାଇଁ ହାହାକାର
ପ୍ରବଞ୍ଚନା ପ୍ରତାରଣା ଅଳୀକ ବେଭାର,
ସ୍ୱାର୍ଥ ଆଶେ ପରାର୍ଥକୁ ଦେବା ବଳିଦାନ
ନିତ୍ୟ ବ୍ୟସ୍ତ ଲଭିବାକୁ ଗୌରବ ସମ୍ମାନ ।
ନାହିଁ ଲୋଡ଼ା ସେ ସଭ୍ୟତା, କି ହେବ ସେ ଜ୍ଞାନେ
ଦେବାକୁ ଯଦ୍ୟପି ହେବ କଷ୍ଟ ପରପ୍ରାଣେ ।
ଯେ ବିଦ୍ୟା ସଭ୍ୟତା କ୍ଷଣଭଙ୍ଗୁର ଜୀବନ,
କଳୁଷିତ କରେ, ତହିଁ କିବା ପ୍ରୟୋଜନ ?'

(ଗ)

'ଚାରି ଆଡ଼େ ପଡ଼ିଅଛି ଉନ୍ନତି ଚହଳ,
ନିଦ୍ରିତ କି ରହିଥିବ ଉତ୍କଳ କେବଳ ।'

(ଘ)

କାହୁଁ ତୁ ଶିଖିଲୁ କହ ଏପରି ବେଭାର,
ଆତ୍ମ ସୁଖେ ରତ ପରକଥା ଭୁଲିବାର ?
ଜଣାଗଲା କହିବାକୁ ହେବ ନାହିଁ ତୋତେ,
ବଡ଼ ଲୋକ ଆଚରଣ ଶିଖନ୍ତି ସମସ୍ତେ ।
ଘରେ ଭୋଜିବାଜି ଗୀତନାଚ ରାତିଜାକ,
ବେଳେ ନଶୁଣନ୍ତି କାନେ ପଡ଼ିଶାଙ୍କ ଡାକ ।
କାଟୁଛନ୍ତି ରାତି ବନ୍ଧୁ ସଙ୍ଗେ ପଶା-ତାସେ,
କେ ଦେଖୁଛି ପଡ଼ିଶା ଯେ ଶୋଇଛି ଉପାସେ ?
ସଜାସଜି ଅଟ୍ଟାଳିକା ଆଲୁଅମାଳାରେ,
ଶୋଇଛି ପଡ଼ିଶା ଭଙ୍ଗା ଦଦରା ଚାଳରେ ।
କାକରା ଆରିସା କେତେ ଦେଇଛନ୍ତି ଫିଙ୍ଗି,
ପଡ଼ିଶାର ଘରେ ଧାନ ଦେଖୁ ନାହିଁ ଢ଼ିଙ୍କି ।

ଫକୀରମୋହନଙ୍କ କବିତାରୁ କେବଳ ତତ୍କାଳୀନ ଓଡ଼ିଶାର ସାମାଜିକ ଦୁଃସ୍ଥିତି ଓ ଦୁର୍ଭାଗ୍ୟର ଚିତ୍ର ମିଳେ ନାହିଁ, ଓଡ଼ିଆ ଜାତୀୟତାର ଚିତ୍ର ମଧ୍ୟ ବାରିହୋଇ ପଡ଼େ ।

ଗଳ୍ପରେ 'ରେବତୀ', ଏବଂ ଉପନ୍ୟାସରେ 'ଛ'ମାଣ ଆଠ ଗୁଣ୍ଠ' ବହୁ ଆଲୋଚିତ । କେବଳ ଓଡ଼ିଶା ନୁହଁ ଜାତୀୟ ଓ ଅନ୍ତର୍ଜାତୀୟସ୍ତରରେ ମଧ୍ୟ ଏହାର ଆଲୋଚନା ହୋଇଆସୁଛି । ଫକୀରମୋହନଙ୍କୁ ଏହି ଦୁଇ ସୃଷ୍ଟି କାଳଜୟୀ ସ୍ରଷ୍ଟାର ଆଖ୍ୟା ଦେଇଛି । 'ରେବତୀ' ଓଡ଼ିଆ ସାହିତ୍ୟରେ ପ୍ରଥମ ଗଳ୍ପ ଏବଂ 'ଛ'ମାଣ ଆଠ ଗୁଣ୍ଠ' ପ୍ରଥମ ସଫଳ ଉପନ୍ୟାସ ।

ପ୍ରଫେସର ବୈଷ୍ଣବ ଚରଣ ସାମଲ କହନ୍ତି, 'ଲଛମା', 'ଛ'ମାଣ ଆଠ ଗୁଣ୍ଠ', 'ମାମୁ' ଓ 'ପ୍ରାୟଶ୍ଚିତ' ଉପନ୍ୟାସ ବାସ୍ତବିକ ଓଡ଼ିଶାରେ ମରହଟ୍ଟା ଶାସନ ଓ ଇଂରେଜ ଶାସନ ଦେଇ ଯେଉଁ ସାମାଜିକ, ସାଂସ୍କୃତିକ, ପ୍ରଶାସନିକ ଓ ଅର୍ଥନୈତିକ ପରିବର୍ତ୍ତନ ଘଟିଥିଲା, ତାହାକୁ ଜୀବନ୍ତ ଭାବରେ ରୂପାୟନ କରିବାରେ ସଫଳତା ଅର୍ଜନ କରିଛନ୍ତି । ପ୍ରଥମଥର ପାଇଁ ଏହି ଉପନ୍ୟାସଗୁଡ଼ିକରୁ

ଓଡ଼ିଶାକୁ, ଓଡ଼ିଶାର ଗ୍ରାମ୍ୟଜୀବନକୁ, ନରନାରୀମାନଙ୍କୁ, ଶୋଷକ ଓ ଶୋଷିତଙ୍କୁ ଚିହ୍ନି ହେଲା । ପ୍ରଥମ ଥର ପାଇଁ ଓଡ଼ିଶାର ମାଟି, ମଣିଷ, ମାଟି-ମଣିଷର ଭାଷା ଓ ତା'ର ସମସ୍ୟା ଏବଂ ଅପର ପକ୍ଷରେ ନୂତନ ଅର୍ଥ କୌଳୀନ୍ୟଭିତ୍ତିରେ ଗଢ଼ି ଉଠିଥିବା ଆଭିଜାତ୍ୟ ବର୍ଗର ଶୋଷଣ ଫୁଟି ଉଠିଲା ଓଡ଼ିଆ ଉପନ୍ୟାସରେ । ଫକୀରମୋହନ ହିଁ ହେଲେ ଏ ଧରଣ ସାହିତ୍ୟର ପ୍ରଥମ ସମ୍ମାନିତ ସ୍ରଷ୍ଟା ।'

ଗଳ୍ପଗୁଡ଼ିକ ମଧ୍ୟ ବେଶ ପ୍ରଭାବଶାଳୀ । ପ୍ରତ୍ୟେକ ଗଳ୍ପରେ ଫକୀରମୋହନ ସମାଜର ବିଭିନ୍ନ ଦିଗ ପ୍ରତି ଗୁରୁତ୍ୱ ଦେଇଛନ୍ତି । ରେବତୀ, ଡାକମୁନସୀ, ଧୂଳିଆବାବା ଭଳି ବହୁ ଗଳ୍ପର ପ୍ରାସଙ୍ଗିକତା ଆମ ସମାଜରେ ଏବେ ମଧ୍ୟ ରହିଛି । ଜୀବନର ଶେଷ ଭାଗରେ ଉପନ୍ୟାସ ସାହିତ୍ୟ ଲେଖାରେ ମନୋନିବେଶ କରିଥିଲେ ଫକୀରମୋହନ । ଜୀବନର ଅଜସ୍ର ଅଭିଜ୍ଞତା ଓ ଅନୁଭୂତିକୁ ସେ ନିଜ ଉପନ୍ୟାସ ମଧ୍ୟରେ ତୋଳିଧରି ଓଡ଼ିଆ ସାହିତ୍ୟରେ ଏକ ନୂଆ ଧାରା ଆରମ୍ଭ କରିଥିଲେ । ପରବର୍ତ୍ତୀ ସମୟରେ କାଳିନ୍ଦୀ ଚରଣ ପାଣିଗ୍ରାହୀ, କାହ୍ନୁଚରଣ ମହାନ୍ତି ଓ ଗୋପୀନାଥ ମହାନ୍ତିଙ୍କ ସୃଷ୍ଟିରେ ଏକ ବିସ୍ତୃତ କାୟା ଧାରଣ କରିଥିଲା ।

**ସହାୟକ ଗ୍ରନ୍ଥ**


- ଦାସ, ଚିତ୍ତରଞ୍ଜନ, ଓଡ଼ିଆ ସାହିତ୍ୟର ସାମାଜିକ-ସାଂସ୍କୃତିକ ଭିତ୍ତିଭୂମି, ପ୍ରକାଶକ: ଶବ୍ଦଲୋକ, କଟକ-୭୫୩୦୦୧, ୧୯୯୩
- ଦାସ, ଚିତ୍ତରଞ୍ଜନ, ଓଡ଼ିଆ ସାହିତ୍ୟର ସାଂସ୍କୃତିକ ବିକାଶଧାରା, ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର, ୧୯୮୧
- ସାମଲ, ଡ.ବୈଷ୍ଣବ ଚରଣ, ଓଡ଼ିଆ ସାହିତ୍ୟରେ ରାଧାନାଥ ଓ ସତ୍ୟବାଦୀ ଯୁଗ, ଫ୍ରେଣ୍ଡ୍ସ ପବ୍ଲିଶର୍ସ କଟକ-୭୫୩୦୦୨, ୨୦୧୩ ( ଚତୁର୍ଥ ସଂସ୍କରଣ)
- ସାମନ୍ତରାୟ, ଡ. ନଟବର: ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦)
- ମିତ୍ର, ବାମାଚରଣ: ଜୀବନ ସାହିତ୍ୟ ଓ କଳା, କଟକ ଷ୍ଟୁଡେଣ୍ଟଷ୍ଟୋର, କଟକ ୭୫୩୦୦୨,୧୯୭୬
- ରାଉତରାୟ, ସଚ୍ଚିଦାନନ୍ଦ, ସାହିତ୍ୟରେ ମୂଲ୍ୟବୋଧ, ଅଗ୍ରଦୂତ, ୭୫୩୦୦୨, ୧୯୭୪
- ପାଣିଗ୍ରାହୀ, ଡ. କୃଷ୍ଣଚରଣ, ମୋ ସମୟର ଓଡ଼ିଶା, କିତାବ ମହଲ, କଟକ-୩,୧୯୭୮



ଏମ୍.ଆଇ.ଜି-୪୩
କେ- ୯ଏ
କଳିଙ୍ଗ ବିହାର, ପାତ୍ରପଡା
ପିନ୍-୭୫୧୦୧୯




# ଦରଦୀ ମଣିଷ – ପ୍ରଣମ୍ୟ ପୁରୁଷ

**ରବିନ୍ ଖଣ୍ଡାୟତରାୟ**

ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଓ ଆଶାଲତା ପଟ୍ଟନାୟକଙ୍କର କଟକସ୍ଥିତ ଆନନ୍ଦ ଭବନରେ ୧୯୧୬ ମସିହା ମାର୍ଚ୍ଚ ୫ ତାରିଖ ଦିନ ବିଜୟାନନ୍ଦ ପଟ୍ଟନାୟକ ଓରଫ ବିଜୁ ପଟ୍ଟନାୟକ ଜନ୍ମଗ୍ରହଣ କରିଥିଲେ । ଯାହାଙ୍କର ପ୍ରତିଭା ଥିଲା ଅନନ୍ୟ ଆଉ ବ୍ୟକ୍ତିତ୍ୱ ଥିଲା ଅସୀମ । ପ୍ରାଣ ଭରି ସେ ଭଲପାଉଥିଲେ ଓଡ଼ିଶାକୁ ଆଉ କୋଟିକୋଟି ଓଡ଼ିଶାବାସୀଙ୍କୁ । ଓଡ଼ିଶା ପ୍ରତି ତାଙ୍କର ରହିଥିଲା ଅହେତୁକ ଦୁର୍ବଳତା । ଯେଉଁଥିପାଇଁ ଆଜି ମଧ୍ୟ ସେ କୋଟି ଓଡ଼ିଆର ମଉଡ଼ମଣି ଭାବରେ ସମସ୍ତଙ୍କ ନିକଟରେ ପରିଚିତ ହୋଇ ରହିଛନ୍ତି । ସାରା ଓଡ଼ିଶାର ଦୁଃଖକୁ ସେ ଛାତି ପତେଇ ଅନେକବାର ନିଜ ଭିତରକୁ ନେଇଯାଇଛନ୍ତି । ଅଥଚ କେବେ ତା'ର ମାନ ସମ୍ମାନକୁ ତଳେ ପକାଇବାକୁ ଦେଇନାହାନ୍ତି । ବିଜ୍ଞାନ ପାଇଁ ୟୁନେସ୍କୋ କଳିଙ୍ଗ ପୁରସ୍କାର, ଓଡ଼ିଶାର ବିକାଶ ପାଇଁ ପାରାଦ୍ୱୀପ ବନ୍ଦର, ମିଗ୍ ବିମାନ କାରଖାନା, ପଂଚାୟତିରାଜ ବ୍ୟବସ୍ଥା, ମହିଳା ସଶକ୍ତିକରଣ ଏବଂ ଆଦିବାସୀ ଉନ୍ନୟନ ଯୋଜନା ପରି ଅନେକ ଉଦାହରଣ ମଧ୍ୟରୁ କେତୋଟି ମାତ୍ର । ଏଠି ଜନ୍ମ ଅମର ନୁହେଁ ବରଂ କର୍ମ ଅମର । ପଂଚଭୂତର ଶରୀରରୁ ଯାହା ଚାଲିଯିବାର କଥା ତାହା ଚାଲିଗଲା, ଯାହା ନଷ୍ଟ ହେବାର ବସ୍ତୁ ତାହା ନଷ୍ଟ ହୋଇଗଲା, କିନ୍ତୁ ଯେଉଁ ସତ୍‌କର୍ମ ରହିଗଲା ତାହାର ସୁବାସ ଚଉଦିଗକୁ ବ୍ୟାପିଗଲା । ସେମିତି ଜଣେ ଦରଦୀ ମଣିଷ ଆଉ ଆମ ସମସ୍ତଙ୍କର ପ୍ରଣମ୍ୟ ପୁରୁଷ ବିଜୁବାବୁଙ୍କ ଜୀବନପୁଷ୍ପର ମହକିତ ମହତ୍ତ୍ୱ ସମ୍ପର୍କରେ କିଛି ଆଲୋଚନା କରିବାକୁ ଯାଇ ନିଜକୁ ଧନ୍ୟ ମନେ କରୁଅଛି ।

ଆପଣଙ୍କ ପାଖରେ ଅମାପ ଧନ ସମ୍ପତ୍ତି ଥାଇପାରେ । ଆପଣ ଅପର୍ଯ୍ୟାପ୍ତ କ୍ଷମତାର ଅଧିକାରୀ ହୋଇପାରନ୍ତି ! କିନ୍ତୁ ଆପଣଙ୍କ ପାଖରେ ଯଦି ଦରଦୀ ମନଟିଏ ନାହିଁ, ସ୍ନେହୀ ହୃଦୟଟିଏ ନାହିଁ ତେବେ ସେ ଧନ ଆଉ ସେ କ୍ଷମତା ଆବୋରି ଧରି ଲାଭ ବା କ'ଣ? ପାଟି ଯଦି କାହାପାଇଁ ଭଲ କଥା ପଦେ କହି ନାହିଁ, କି ଏ ମନ ଯଦି କାହା ଦୁଃଖ ଶୋକରେ ଟିକିଏ ସମବେଦନା ଦେଇ ପାରିନାହିଁ ତେବେ କେହି ଆପଣଙ୍କୁ ମନେରଖିବେ ନାହିଁ । ତେଣୁ ଓଠ ପାଇଁ ଭଲ କଥା, ମନ ପାଇଁ ଭଲ ଚିନ୍ତା ଆଉ ହାତ ପାଇଁ ଭଲ କର୍ମ ସବୁ ମଣିଷଙ୍କର ଭୂଷଣ । ସେମିତି ଥିଲେ ଆମ ବିଜୁବାବୁ, ଯାହାଙ୍କର ଜୀବନଚର୍ଯ୍ୟାକୁ ଆଲୋଚନା ପର୍ଯ୍ୟାଲୋଚନା କରାଯିବା ଆଉ ସେଥିରୁ ଅନେକ କିଛି ଶିକ୍ଷା କରିବା ଉଚିତ । ସେଇଥିପାଇଁ ତ ଓଡ଼ିଶାର ଲୋକକ୍ଷେତ୍ରକୁ ପ୍ରଭାବିତ କରିପାରିଥିବା ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସଙ୍କ ପରେ ଯେଉଁମାନେ ଓଡ଼ିଶାର ଜନମାନସରେ ଖୁବ୍ ଭଲଭାବରେ ପରିଚିତ ଥିଲେ, ସେମାନଙ୍କ ମଧ୍ୟରୁ କଳିଙ୍ଗବୀର ବିଜୁ ପଟ୍ଟନାୟକ ଅନ୍ୟତମ । ଯିଏ ଉଚ୍ଚ ଆସନରେ ଥାଇ ମଧ୍ୟ ତୃଣମୂଳ ସ୍ତରରେ ସମସ୍ତଙ୍କ ସହିତ ମିଶି ପାରୁଥିଲେ । ସେ ରିକ୍ସାବାଲାର ମନୋଭାବକୁ ବୁଝି ରିକ୍ସାରେ ବସି ଯିବା ଓ କାକୁଡ଼ି ବାଲାଠୁଁ କାକୁଡ଼ି କିଣି ଖାଇ ପାରୁଥିବା ଜଣେ ଦରଦୀ ମଣିଷ ଥିଲେ । ରିକ୍ସାରେ ବସି

ସଚିବାଳୟ ଯିବାବେଳେ ତା'ର ଭଲମନ୍ଦ ବୁଝୁଥିଲେ । ସେହିପରି ୧୯୯୫ ମସିହାରେ ବାଲିଚନ୍ଦ୍ରପୁରରୁ ଭୁବନେଶ୍ୱର ଫେରୁଥିବା ବେଳେ ଚଣ୍ଡିଖୋଲ ଛକରେ କାକୁଡ଼ି ଖାଇବା ପାଇଁ ଅଟକି ଯାଇଥିଲେ । ଆଉ ସେଠାରେ କାକୁଡ଼ି ଖାଇବା ସାଙ୍ଗକୁ ସାଧାରଣ ଜନତାଙ୍କ ସହିତ ମଧ୍ୟ ଭାବର ଆଦାନ ପ୍ରଦାନ କରିଥିଲେ । ସେମିତି କେତେବେଳେ ରାସ୍ତାରେ ଅଟକି ପଇଡ଼ ପିଇବା, ଜଳଖିଆ ଖାଇବା, ଚା'ପିଇବା ସହିତ ସାଧାରଣ ଲୋକମାନଙ୍କ ସହିତ କଥାବାର୍ତ୍ତା ହେବା ତାଙ୍କର ଥିଲା ନିତ୍ୟ ନୈମିତ୍ତିକ ଅଭ୍ୟାସ ।

ସମସ୍ତଙ୍କ ପାଇଁ ତାଙ୍କ ହୃଦୟରେ ଜାଗାଟିଏ ଥିଲା । ଆଉ ସମସ୍ତଙ୍କୁ ସେ ଏତେ ନିଜର ଭାବୁଥିଲେ ଯେ ତୁ ବୋଲି ସମ୍ବୋଧନ କରୁଥିଲେ । କେବେ କାର୍ ଛାଡ଼ି କାହା ସ୍କୁଟର ପଛରେ ବସି ପଡୁଥିଲେ ତ କେବେ ପୁଣି କାହା ସହିତ ମିଶି ସାଇକେଲ୍ ଚଲାଇ ଅଫିସ୍ ଆସିଯାଉଥିଲେ । ସେ ଗରିବର ପେଟ ଚିହ୍ନୁଥିବା ଜଣେ ସଚ୍ଚୋଟ ନେତା ଥିଲେ । ସବୁଦିନ ତାଙ୍କ ଦାଢ଼ି କାଟି ଦେଉଥିବା ଏଲ୍. ତ୍ରିନାଥ ରାଓ ତାଙ୍କ ପାଖରେ ପହଞ୍ଚିବା ଯେମିତି ସହଜ ଥିଲା, ତା'ଠାରୁ ଆହୁରି ସହଜ ଥିଲା ଗାଁ ଗହଳିର ସାଧାରଣ ମହିଳାଟିଏ ତାଙ୍କ ପାଖରେ ପଂଚହିବା । ବିଜୁ ପଟ୍ଟନାୟକ କେବଳ ଗୋଟିଏ ନାମ ନୁହେଁ ବରଂ ସେ ଏକ ଅନୁଷ୍ଠାନ । ତେଣିକି କ୍ଷମତା ଥାଉ କି ନଥାଉ ସାଧାରଣ ଜନତାଙ୍କର ତାଙ୍କ ଉପରେ ଅଗାଧ ବିଶ୍ୱାସ ରଖିଥିଲେ । ବିଜୁବାବୁ ମୁଖ୍ୟମନ୍ତ୍ରୀ ନଥିବା ସମୟର କଥା । ସେ ମୟୂରଭଞ୍ଜର ବେତନଟି ଡାକବଙ୍ଗଳାରେ ଅବସ୍ଥାନ କରୁଥାଆନ୍ତି । ଜଣେ ଆଦିବାସୀ ମହିଳା ତାଙ୍କୁ ଦେଖା କରିବାକୁ ଆସିଥିଲା । ତା'ର ଅଭିଯୋଗ ସେ ବାର୍ଦ୍ଧକ୍ୟ ଭତ୍ତା ଟଙ୍କା ନେବାକୁ ଆସିଛି କିନ୍ତୁ ବିଡ଼ିଓ ଉପରବେଳା ଆସିବେ । ଏହା ଶୁଣି ବିଜୁବାବୁ କହିଲେ କ'ଣ ଅସୁବିଧା ହେଲା, ତୁ ଉପରବେଳା ଆସି ନେବୁ । ମହିଳା ଜଣଙ୍କ କହିଲା, ସେହି ତ ଅସୁବିଧା ବାବୁ ! ଆମ ଘରେ ମାତ୍ର ଗୋଟିଏ ସଫା ଶାଢ଼ୀ ଯାହାକୁ ମୁଁ ପିନ୍ଧି ଆସିଛି । ଏବେ ଅସଲ କଥାଟା ବୁଝିପାରି ବିଜୁବାବୁ ଚୁପ୍ ରହିଲେ । ଆଉ ସଙ୍ଗେ ସଙ୍ଗେ ବଜାରରୁ ଦଶଟା ଶାଢ଼ୀ ମଗାଇ ସେ ମହିଳାଙ୍କୁ ଦେଇ ବିଦା କଲେ ।

ଯେମିତି ସବୁ ଲେଖିଲା ବାଲା ଲେଖକ ହୋଇପାରନ୍ତି ନାହିଁ, ତାହା ଯଦି ହୋଇଥାଆନ୍ତା, ତେବେ ଅଧିକ ଲେଖାପଢ଼ା କରୁଥିବା କୋର୍ଟ କଚେରୀର ମୋହରୀରମାନେ ବଡ଼ବଡ଼ ଲେଖକ ହୋଇଯାଇ ଥାଆନ୍ତେ । ସେମିତି ଯାହାଙ୍କର ସେବା ମନୋଭାବ ନାହିଁ କି ଲୋକଙ୍କୁ ଭଲ ପାଇ ପାରନ୍ତି ନାହିଁ କେବଳ ନିର୍ବାଚନ ଜିତି କ୍ଷମତା ଉପଭୋଗ କରୁଥିବା ସେହି ନେତା ପ୍ରକୃତ ଜନ ପ୍ରତିନିଧି ହୋଇପାରନ୍ତି ନାହିଁ । ତେବେ ଏ ସବୁଥିରୁ ଯିଏ ସ୍ୱତନ୍ତ୍ର ସେ ହେଲେ ବିଜୁ ପଟ୍ଟନାୟକ । ଏମିତି ଭାବରେ ସାଧାରଣ ଜନତାଙ୍କର ଅତି ନିକଟତର ହୋଇପାରିଥିବା ସେହି ଦରଦୀ ମଣିଷଙ୍କୁ ଆଜି କେବଳ ଓଡ଼ିଶା କାହିଁକି ସାରା ଭାରତ ଏପରିକି ଭାରତ ବାହାରେ ଇଣ୍ଡୋନେସିଆ ନିଜ ଦେଶର 'ଭୂମିପୁତ୍ର' ଭାବରେ ସମ୍ମାନିତ କରିଛି, ଯାହା ପ୍ରତି ଓଡ଼ିଆଙ୍କ ପାଇଁ ନିଶ୍ଚିତ ଭାବରେ ଗର୍ବ ଆଉ ଗୌରବର ବିଷୟ ।

ମୁଖ୍ୟ ଗ୍ରନ୍ଥାଗାରିକ
କିସ୍ ମାନିତ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର



# ଓଡ଼ିଆ ନବବର୍ଷ ଓ ପଣା ସଂକ୍ରାନ୍ତି

ଗୋଲାପ ନନ୍ଦ

ସୌର ଚଳନ ଅନୁଯାୟୀ ଓଡିଆ ନବବର୍ଷ ପ୍ରତିବର୍ଷ ମହାବିଷୁବ ସଂକ୍ରାନ୍ତିରୁ ଆରମ୍ଭ ହୁଏ । ଏହିଦିନଠାରୁ ନୂତନ ଶକାବ୍ଦ ଆରମ୍ଭ ହୁଏ । ଓଡିଆ ନବବର୍ଷର ଆରମ୍ଭ ବିଜ୍ଞାନସମ୍ମତ ଓ ଯୁକ୍ତିଯୁକ୍ତ । ଏହାର ଗଣନା ନିରୂପଣ ସୂର୍ଯ୍ୟ ମେଷ ରାଶିରେ ପ୍ରବେଶ କରିବାଠାରୁ ହୋଇଥାଏ ।

ସୂର୍ଯ୍ୟଙ୍କର ଏକ ରାଶିରୁ ଅନ୍ୟ ରାଶି ଗମନକୁ ସଂକ୍ରାନ୍ତି କୁହାଯାଏ । ପ୍ରତି ଇଂରାଜୀ ମାସର ୧୩ ତାରିଖ ଠାରୁ ୧୫ ତାରିଖ ମଧ୍ୟରେ ସୂର୍ଯ୍ୟ ଗୋଟିଏ ରାଶିରୁ ଅନ୍ୟ ଏକ ରାଶିକୁ ଗମନ କରିବା ଯୋଗୁଁ ସୂର୍ଯ୍ୟଙ୍କର ସଂକ୍ରମଣ କ୍ରିୟା ବା ସଂକ୍ରାନ୍ତି ହୁଏ । ତେଣୁ ସୂର୍ଯ୍ୟଙ୍କ ଅୟନକ୍ରମେ ସେହି ସଂକ୍ରାନ୍ତିଗୁଡିକ ନାମିତ ହୋଇଥାନ୍ତି । ଦୁଇଟି ମାସର ଅର୍ଦ୍ଧେକକୁ ନେଇ ଗୋଟିଏ ରାଶି ମାସ ଗୋଟିଏ ସଂକ୍ରାନ୍ତିଠାରୁ ଆରମ୍ଭ ହୋଇ ପରବର୍ତ୍ତୀ ମାସନ୍ତ ପର୍ଯ୍ୟନ୍ତ ଚଳେ । ପୃଥିବୀର ନିଜ କକ୍ଷରେ ଦୈନିକ ପରିଭ୍ରମଣ ବା ଆହ୍ନିକ ଗତି ଏବଂ ସୂର୍ଯ୍ୟଙ୍କର ବିଷୁପଦୀ ସଂକ୍ରମଣ ବା ସଂକ୍ରାନ୍ତି ସଞ୍ଚାର ବିଷୁବ ରେଖାଠାରୁ ସୂର୍ଯ୍ୟଙ୍କ ଉତ୍ତରାୟଣ ଓ ଦକ୍ଷିଣାୟନ ଗତି ସହିତ ସଂପୃକ୍ତ ।

ଜ୍ୟୋତିଷ ତତ୍ତ୍ୱ ଅନୁଯାୟୀ ରବି ସଂକ୍ରମଣ କାଳୀନ ଗ୍ରହ ଚକ୍ର ଅନୁସାରେ ୧୨ଟି ରାଶିଚକ୍ର ରହିଛି। ଏଣୁ ପୃଥିବୀର ବାର୍ଷିକ ଗତି ଦ୍ୱାରା ନିଜ କକ୍ଷ ପଥରେ ସୂର୍ଯ୍ୟଙ୍କୁ ପରିକ୍ରମା କରୁଥିବା ବେଳେ ୧୨ ମାସରେ ବିଭିନ୍ନ ଅବସ୍ଥାନରେ ରହି ସୂର୍ଯ୍ୟଙ୍କର ଗୋଟିଏ ରାଶିଚକ୍ର ଅନ୍ୟ ଏକ ରାଶିଚକ୍ରକୁ ସଂକ୍ରମଣ କରୁଥିବା ସମୟକୁ ସଂକ୍ରାନ୍ତି ରୂପେ ଗଣା ଯାଉଥିବାରୁ ଏହା ହେଉଛି ଓଡିଆ ନବବର୍ଷର ପ୍ରଥମ ଦିନ । ରାଶି ଅନୁସାରେ ସଂକ୍ରାନ୍ତିଗୁଡିକ ହେଲା- ମେଷ, ବୃଷ, ମିଥୁନ, କର୍କଟ, ସିଂହ, କନ୍ୟା, ତୁଳା, ବିଛା, ଧନୁ, ମକର, କୁମ୍ଭ ଓ ମୀନ । ବର୍ଷର ସମସ୍ତ ସୌରମାସ ସଂକ୍ରାନ୍ତି ଅଟେ । କିନ୍ତୁ ଅଧିମାସ ବା ମଳମାସ ସଂକ୍ରାନ୍ତି ନୁହେଁ । ଭିନ୍ନ ଭିନ୍ନ ନକ୍ଷତ୍ରରେ ସୂର୍ଯ୍ୟଙ୍କ ସଂକ୍ରମଣ ଘଟିବା ଯୋଗୁଁ ସଂକ୍ରାନ୍ତିମାନଙ୍କୁ ୭ ଭାଗରେ ବିଭକ୍ତ କରାଯାଇଛି- ଯଥା- ମନ୍ଦା, ମନ୍ଦାକିନୀ, ଧ୍ୱାକ୍ଷୀ, ଘୋରା, ମହୋଦରୀ, ରାକ୍ଷସୀ, ମିଶ୍ରିତା ।

ଓଡିଶାରେ ସଂକ୍ରାନ୍ତିର ନାମକରଣ ପରବର୍ତ୍ତୀ ମାସର ନାମ ଅନୁସାରେ କରାଯାଏ । ଧନୁ (ପୌଷ), ମିଥୁନ (ଆଷାଢ), କନ୍ୟା (ଆଶ୍ୱିନ) ଓ ମୀନ (ଚୈତ୍ର) ସଂକ୍ରାନ୍ତିକୁ 'ଷଡଶୀତି' ସଂକ୍ରାନ୍ତି କୁହାଯାଏ ।

ବୃଷ (ଜ୍ୟେଷ୍ଠ), ବୃଶ୍ଚିକ (ମାର୍ଗଶିର) ସିଂହ (ଭାଦ୍ରବ) ଓ କୁମ୍ଭ (ଫଗୁଣ) ସଂକ୍ରାନ୍ତିକୁ 'ବିଷ୍ଣୁପଦୀ' ସଂକ୍ରାନ୍ତି କୁହାଯାଏ ।

ମକର (ମାଘ) ସଂକ୍ରାନ୍ତିକୁ 'ଉତ୍ତରାୟଣ' ଓ କଙ୍କଡା (ଶ୍ରାବଣ) ସଂକ୍ରାନ୍ତିକୁ 'ଦକ୍ଷିଣାୟନ' ସଂକ୍ରାନ୍ତି କୁହାଯାଏ ।

ମେଷ ବା ବୈଶାଖ ସଂକ୍ରାନ୍ତିକୁ 'ମହା ବିଷୁବ ଏବଂ ତୁଳା (କାର୍ତ୍ତିକ) ସଂକ୍ରାନ୍ତିକୁ 'ଜଳ ବିଷୁବ' ସଂକ୍ରାନ୍ତି କୁହାଯାଏ ।

'ସ୍କନ୍ଦ ପୁରାଣ' ଅନୁଯାୟୀ ମାର୍ଗଶିର ମାସ ସଂକ୍ରାନ୍ତିରେ କାର୍ତ୍ତିକେୟ ବ୍ରତ କରାଯାଏ- ପୁତ୍ର ପ୍ରାପ୍ତି

ଉଦ୍ଦେଶ୍ୟରେ । 'ଭବିଷ୍ୟ ପୁରାଣ'ରେ ବର୍ଣ୍ଣିତ ଯେ ବିଷୁବ ସଂକ୍ରାନ୍ତିଠାରୁ ଆରମ୍ଭ କରି ଏକ ବର୍ଷ ପର୍ଯ୍ୟନ୍ତ ପ୍ରତି ସଂକ୍ରାନ୍ତିରେ ବ୍ରାହ୍ମଣଙ୍କୁ ଜଳଘଟ ଦାନ କରାଯାଏ । 'ବ୍ରହ୍ମ ପୁରାଣ'ରେ ରହିଛି ଯେ ବିଷୁବ ସଂକ୍ରାନ୍ତିଠାରୁ ଆରମ୍ଭ କରି ଏକ ବର୍ଷ ପର୍ଯ୍ୟନ୍ତ ପ୍ରତି ସଂକ୍ରାନ୍ତିରେ ଦାନ କରିବାକୁ ଦାନ ସଂକ୍ରାନ୍ତି କୁହାଯାଏ । ମହାବିଷୁବ ସଂକ୍ରାନ୍ତି ଯଦି ମଙ୍ଗଳବାରରେ ପଡେ ସେଦିନ ମଙ୍ଗଳ ଚଣ୍ଡୀଙ୍କର ପୂଜା କରାଯାଏ ।

ମହାବିଷୁବ ସଂକ୍ରାନ୍ତି ବା ପଣା ସଂକ୍ରାନ୍ତିକୁ ଓଡିଆ ନୂଆ ବର୍ଷ ଭାବରେ ପାଳନ କରାଯାଏ । ଏହି ଦିନଠାରୁ ବସନ୍ତ ଋତୁର ଶେଷ ଓ ଗ୍ରୀଷ୍ମର ଆରମ୍ଭ ହୋଇଥାଏ । ଗତ ବର୍ଷ ଏହି ପଣା ସଂକ୍ରାନ୍ତି ୧୪ ଅପ୍ରେଲ ରବିବାରରେ ପଡିଥିଲା । ଏ ବର୍ଷ ତାହା ଅପ୍ରେଲ ୧୩ ତାରିଖ ସୋମବାର ଦିନ ପଡୁଛି । ଏହି ଦିନଠାରୁ ସୂର୍ଯ୍ୟଙ୍କର କିରଣ ପ୍ରଖର ହୋଇଥାଏ । ବାୟୁ ମଣ୍ଡଳର ତାପ ଶକ୍ତି ଅଧିକ ଥିବାରୁ ଦେହକୁ ଶୀତଳତା ପ୍ରଦାନ ପାଇଁ ଏହି ଦିନ ପଣା ପିଇବାର ବ୍ୟବସ୍ଥା ରହିଛି । ଏହି ଦିନ ପ୍ରତି ଓଡିଆ ଘରେ ପଣା ପ୍ରସ୍ତୁତ କରାଯାଇ ସମସ୍ତଙ୍କୁ ପଣା ପିଇବାକୁ ଦିଆଯାଇଥାଏ । ଏହି ପଣା ପାଚିଲା ବେଲ, ଦହି, କଦଳୀ, ଗୁଡ, ଛେନା ଓ ନଡିଆ ଓ ଗୋଲମରିଚ ଗୁଣ୍ଡ ମିଶାଇ ପ୍ରସ୍ତୁତ କରାଯାଏ । ପ୍ରଚଣ୍ଡ ରୌଦ୍ରତାପରେ ପ୍ରଭାବିତ ଶରୀରକୁ ଏହି ପଣା ଅତ୍ୟନ୍ତ ଶାନ୍ତି ଓ ଆନନ୍ଦ ପ୍ରଦାନ କରିଥାଏ ।

ଏହି ଦିନ ଘରେ ପୂଜା ପାଉଥିବା ତୁଳସୀ ଚଉଁରାରେ ଛାମୁଣ୍ଡିଆ କରି ସେଥିରେ ଏକ ଛୋଟ ମାଠିଆରେ ପାଣି ରଖି ତା'ର ନିମ୍ନ ଅଂଶରେ ସରୁ କଣା କରି ସୂକ୍ଷ୍ମ ଧାରରେ ଜଳଦାନ କରାଯାଏ । ତେଣୁ ଏହି ସଂକ୍ରାନ୍ତିର ଅନ୍ୟ ନାମ ଜଳ ସଂକ୍ରାନ୍ତି । ଏହି ଦିନ ଝାମୁ ବ୍ରତ କରୁଥିବା ପାଟୁଆମାନେ ବ୍ରତ ଉଦ୍‌ଯାପନ କରନ୍ତି ।

ପଣା ସଂକ୍ରାନ୍ତି ଦିନ ଚଣ୍ଡୀ, ସାରଳା, ବିରଜା ଆଦି ଠାକୁରାଣୀ ମନ୍ଦିରମାନଙ୍କରେ ଝାମୁଯାତ ପାଳନ କରାଯାଏ । ଦକ୍ଷିଣ ଓଡିଶାରେ ମାସାଧିକ କାଳ ଧରି ଚାଲିଥିବା ଦଣ୍ଡନାଟର ଅନ୍ତଭାବେ ମେରୁଯାତ ପାଳନ କରାଯାଏ । ଉତ୍ତର ଓଡିଶାରେ ଏହି ଦିନଟିକୁ ଚଡକପର୍ବ ନାମରେ ପାଳନ କରାଯାଏ ।

ଆମ ଉତ୍କଳୀୟ ସାମାଜିକ ଚଳଣିରେ ପ୍ରତ୍ୟେକ ଶୁଭାଶୁଭ କାର୍ଯ୍ୟ ଦୈନିକ ପଞ୍ଚାଙ୍ଗ, ଅମୃତବେଳା, ପର୍ବପର୍ବାଣି, ଶ୍ରୀଜଗନ୍ନାଥଙ୍କର ବେଶ ଓ ଯାତ୍ରା, ସ୍ନାନଯୋଗ, ଚନ୍ଦ୍ରଗ୍ରହଣ, ସୂର୍ଯ୍ୟପରାଗ, ଗ୍ରହସ୍ଥିତି କର୍ମ ସହ ଜନ୍ମଜାତକ ପ୍ରସ୍ତୁତି । କୃଷି ଓ ଜଳ ବାୟୁରୁ ସୂଚନା ପାଇଁ ପାଞ୍ଜିର ଆବଶ୍ୟକତା ରହିଛି ।

ହିନ୍ଦୁ ପରମ୍ପରା ଅନୁସାରେ ଦୋଳ ପୂର୍ଣ୍ଣିମାରେ ଓଡିଆ ପାଞ୍ଜି ପୂଜା କରାଯାଏ ଓ ପଣା ସଂକ୍ରାନ୍ତିଠାରୁ ପାଞ୍ଜି ଚଳେ । ଓଡିଆ ପାଞ୍ଜି ଗଣନା ଅନୁସାରେ ମହାବିଷୁବ ସଂକ୍ରାନ୍ତି ବର୍ଷ ଆରମ୍ଭର ପ୍ରଥମ ଦିନ । ଏହି ଦିନ ସୂର୍ଯ୍ୟ ଅଶ୍ୱିନୀ ନକ୍ଷତ୍ର ମେଷ ରାଶିକୁ ଗତି କରିଥାନ୍ତି ।

ପୁରାଣ ଅନୁସାରେ ମହାବୀର ହନୁମାନ ବିଷୁବ ସଂକ୍ରାନ୍ତିରେ ଜନ୍ମଗ୍ରହଣ କରିଥିଲେ । ସେ ଶ୍ରୀରାମଙ୍କ ପରମ ଭକ୍ତ । ତେଣୁ ହିନ୍ଦୁମାନଙ୍କ ପାଇଁ ଏହା ଏକ ପବିତ୍ର ଦିବସ । ଘରେ ଘରେ ଓ ମନ୍ଦିରରେ ହନୁମାନଙ୍କର ପୂଜାର୍ଚ୍ଚନା ଓ ହନୁମାନ ଚାଳିଶା ପାଠ କରାଯାଏ ।

ମହାବିଷୁବ ସଂକ୍ରାନ୍ତି କେବଳ ଓଡିଶାର ପର୍ବ ନୁହେଁ, ଏହା ଏକ ଜାତୀୟ ଓ ଅନ୍ତର୍ଜାତୀୟ ପର୍ବ । ଓଡିଶାରେ ଯାହା ପଣା ସଂକ୍ରାନ୍ତି ବା ବିଷୁବ ସଂକ୍ରାନ୍ତି, ପଞ୍ଜାବରେ ତାହା ବୈଶାଖୀ । ପଶ୍ଚିମବଙ୍ଗ ଓ ପଡୋଶୀ ବାଂଲାଦେଶରେ ତାହା ପହେଲା ବୈଶାଖ, କେରଳରେ ବିଷୁ, ଆସାମରେ ରଙ୍ଗାଲି ବିହୁ, ତାମିଲନାଡୁର ପୁଥାଣ୍ଡୁ, ଉତ୍ତରାଖଣ୍ଡର ବିଖୋଟି, ନେପାଳରେ ବିକ୍ରମ ସମ୍ୱତ୍‌, ଶ୍ରୀଲଙ୍କାରେ ଅଲୁଥ ଅଭୁରୁଥୁ, ଥାଇଲାଣ୍ଡରେ ସଙ୍ଗକ୍ରନ, କାମ୍ବୋଡିଆରେ ଚୋଲଚନମ୍ ଓ ମ୍ୟାମାରରେ ଥିଙ୍ଗ୍ୟାନ । ଉତ୍ତର ଭାରତର ବିଭିନ୍ନ ସ୍ଥାନରେ ଲୋକେ ଏହି ଦିନଠାରୁ ଧାନ୍ୟ, ଲବଣ, ଭୋଗ, ରୂପ, ତେଜ, ସୌଭାଗ୍ୟ, ଆୟୁ ଏବଂ ଧନ କାମନା କରି ସଂକ୍ରାନ୍ତି ବ୍ରତ ପାଳନ କରନ୍ତି ।

ଶିଖ୍ ଧର୍ମାବଲମ୍ବୀଙ୍କ ମୁଖ୍ୟ ତଥା ପଞ୍ଜାବର ଅନ୍ୟତମ ଜାତୀୟ ପର୍ବ ହେଲା ବୈଶାଖୀ, ଯାହା ବିଷୁବ ସଂକ୍ରାନ୍ତି ଦିନ ପାଳନ କରାଯାଏ । ୧୬୯୯ ମସିହା ମହାବିଷୁବ ସଂକ୍ରାନ୍ତିରେ ଦଶମଗୁରୁ ଗୋବିନ୍ଦ ସିଂ 'ଖାଲସାପନ୍ଥ' ପ୍ରତିଷ୍ଠା କରିଥିଲେ । ସେହିଦିନଠାରୁ ଶିଖ୍‌ମାନେ ଏହି ଦିବସଟିକୁ ନବବର୍ଷ ଭାବେ ପାଳନ କରିଥାନ୍ତି । ଏହିଦିନ ଗୁରୁଦ୍ୱାରମାନଙ୍କରେ କୀର୍ତ୍ତନ ଓ ଲଙ୍ଗର ବ୍ୟବସ୍ଥା ସହ ବିଭିନ୍ନ ସ୍ଥାନରେ ନଗର କୀର୍ତ୍ତନ ବା ଶୋଭାଯାତ୍ରା ଆୟୋଜନ କରାଯାଏ । ତା' ସହିତ ପଞ୍ଜାବର ଏହା ଅମଳ ଋତୁ ହୋଇଥିବାରୁ ଏହି ଦିନ ଆଧ୍ୟାତ୍ମିକ କାର୍ଯ୍ୟକ୍ରମ ସହ ସାମାଜିକ ଓ ସାଂସ୍କୃତିକ କାର୍ଯ୍ୟକ୍ରମ ଅନୁଷ୍ଠିତ ହୁଏ ।

ଆସାମର ମୁଖ୍ୟ ପର୍ବ ବିହୁ । ଋତୁ ଅନୁସାରେ ବର୍ଷର ବିଭିନ୍ନ ସମୟରେ ଏହା ପାଳନ କରାଯାଏ । ଏପ୍ରିଲ ମାସରେ ରଙ୍ଗାଲି ବା ବୋହଗ ବିହୁ, ଅକ୍ଟୋବରରେ କୋଙ୍ଗାଲି ବା କଟି ବିହୁ ଏବଂ ଜାନୁଆରୀରେ ମାଘ ବା ଭୋଗାଲି ବିହୁ । ତିନୋଟିଯାକ ବିହୁରୁ ରଙ୍ଗାଲି ବା ବୋହାଗ ବିହୁକୁ ସର୍ବଶ୍ରେଷ୍ଠ ବିହୁ ବୋଲି କୁହାଯାଏ । ଏହା ଏକ କୃଷିଭିତ୍ତିକ ପର୍ବ । ଧାନ ବୁଣା ସମୟରେ ରଙ୍ଗାଲି ବିହୁ ଅନୁଷ୍ଠିତ ହୁଏ । ଫସଲର ସୁରକ୍ଷା କାମନାରେ କୋଙ୍ଗାଲି ଓ ଅମଳ ବେଳେ ଭୋଗାଲି ବିହୁ ଅନୁଷ୍ଠିତ ହୁଏ ।

ମାଲୟାଲି କ୍ୟାଲେଣ୍ଡରର ମେଦାମ ମାସରେ ଏହି ପର୍ବ ପାଳନ କରାଯାଏ । ଏହା ପ୍ରଥମ ମାସ ହୋଇଥିବାରୁ ଏହାର ପ୍ରଥମ ଦିନକୁ ନୂଆ ବର୍ଷ ଭାବେ ପାଳନ କରାଯାଏ ଏବଂ ଏହି ଦିନ ବିଷ୍ଣୁଙ୍କୁ ପୂଜା କରାଯାଏ । ମାଲାୟାଲି ମେଦାମ ମାସ ହେଉଛି ଗ୍ରେଗରିଆନ୍ କ୍ୟାଲେଣ୍ଡରର ଏପ୍ରିଲ ମାସ । ଏହି ଉତ୍ସବ କେରଳ ସହିତ ତାମିଲନାଡୁର କିଛି ସ୍ଥାନରେ ମଧ୍ୟ ପାଳନ କରାଯାଏ । ଏହି ଦିନ ଶଯ୍ୟାତ୍ୟାଗ କରିବା ମାତ୍ରେ କିଛି ନିର୍ଦ୍ଦିଷ୍ଟ ବସ୍ତୁ - ଯଥା ସ୍ୱର୍ଣ୍ଣ ଅଳଙ୍କାର, ନୂତନ ଧଳା ବସ୍ତ୍ର, ନଡିଆ, କାକୁଡି ପ୍ରଭୃତି ଦେଖିଲେ ବର୍ଷଟି ମଙ୍ଗଳକର ହୁଏ ବୋଲି ବିଶ୍ୱାସ କରାଯାଏ । ତେଣୁ ପରିବାରର ମହିଳାମାନେ ବିଷୁବ ସଂକ୍ରାନ୍ତିର ପୂର୍ବ ସନ୍ଧ୍ୟାରୁ ଉକ୍ତ ଦ୍ରବ୍ୟଗୁଡିକୁ ଶଯ୍ୟା ନିକଟରେ ସଜାଇ ରଖନ୍ତି । ସକାଳେ ପରିବାରର ମୁଖ୍ୟ ସେଗୁଡିକ ଦର୍ଶନ କଲାପରେ ବୟସ କ୍ରମେ ଅନ୍ୟମାନେ ତାହା ଦର୍ଶନ କରନ୍ତି । ଏହାକୁ 'ବିଷୁକାନି' କୁହାଯାଏ ।

ତାମିଲ କ୍ୟାଲେଣ୍ଡରର ପ୍ରଥମ ମାସ ହେଉଛି ଚିଥିରାଇ । ଏହାର ପ୍ରଥମ ଦିନ ପଡେ ଗ୍ରେଗରିୟାନ, ଏପ୍ରିଲ ମାସର ୧୩/୧୪ ତାରିଖରେ । ଏହିଦିନ ବ୍ରହ୍ମା ସୃଷ୍ଟି ରଚନା କରିଥିଲେ । ତେଣୁ ତାମିଲମାନେ ଏହି ଦିନ ନୂଆ ବର୍ଷ ବା 'ପୁଥୁସା ପିରାପ୍ପୁ' ପାଳନ କରନ୍ତି । ଏହି ଦିନ ପରିବାରର ସମସ୍ତ ସଦସ୍ୟ ନୂଆବସ୍ତ୍ର ପରିଧାନ କରନ୍ତି ଏବଂ ମିଠାଖଟା, କଷା, ପିତା ଆଦି ମିଶ୍ରିତ ସ୍ୱାଦଯୁକ୍ତ ଏକ ପ୍ରକାର ସ୍ୱତନ୍ତ୍ର ଖାଦ୍ୟ ପ୍ରସ୍ତୁତ କରନ୍ତି। ଏହାକୁ 'ମଙ୍ଗାପଛାଡି' କୁହାଯାଏ । ଏହି ଦିବସରେ ମୀନାକ୍ଷି ଦେବୀ ଓ ସୁନ୍ଦରେଶ୍ୱର ମହାଦେବଙ୍କ ବିବାହ ମଧ୍ୟ ଅନୁଷ୍ଠିତ ହୁଏ ।

ଏହି ଅବସରରେ ଓଡିଶାର ବିଭିନ୍ନ ସ୍ଥାନରେ 'ବିଷୁବ ମିଳନ' ଆୟୋଜନ କରାଯାଇ ବୁଦ୍ଧିଜୀବୀ, ସାହିତ୍ୟିକ ଓ କବିମାନଙ୍କୁ ଆମନ୍ତ୍ରଣ କରି ସାହିତ୍ୟ ଆଲୋଚନାଚକ୍ର ଏବଂ କବିତା ପାଠୋତ୍ସବ ଆଦି କରାଯାଏ । ଗୋଟିଏ ଜାତି ଓ ସଭ୍ୟତା ତିଷ୍ଠି ରହେ, ତା'ର ମହାନ୍, ଐତିହ୍ୟ, ପରମ୍ପରା ଓ ସଂସ୍କୃତିକୁ ନେଇ । ଧର୍ମୀୟ ଚେତନା, ବିଜ୍ଞାନ ସମ୍ବନ୍ଧୀୟ ତତ୍ତ୍ୱ, ପରିବେଶ ସଚେତନତା ଓ ଶରୀର ଚର୍ଯ୍ୟା ପାଇଁ ଖାଦ୍ୟପେୟ ନିର୍ଦ୍ଧାରଣ ଆଦି ସବୁ ଦୃଷ୍ଟିକୋଣରୁ ଏହି ଦିବସର ମହତ୍ତ୍ୱ ଗୁରୁତ୍ୱପୂର୍ଣ୍ଣ ଅଟେ ।

ଦେଉଳବେଡା କଲୋନୀ
କ୍ୱାର୍ଟର ନଂ - ୧ ବି - ୨୦
ପିନ୍ - ୭୫୯୧୦୨, ତାଳଚେର



# ଓଡ଼ିଶା ପର୍ଯ୍ୟଟନର ଗନ୍ତାଘର କନକପୁରୀ-କନିକା

ଡକ୍ଟର କୃତ୍ତିବାସ ନାୟକ

ଓଡିଶାକୁ ଈଶ୍ବର ପ୍ରାକୃତିକ ବିଭବରେ ଭରିଦେଇଛନ୍ତି । ପାହାଡ଼-ପର୍ବତ, ନଦୀ-ସମୁଦ୍ର, ହ୍ରଦ-ଝରଣା, ଜଳପ୍ରପାତ-ଉଷ୍ଣ ପ୍ରସବଣ ଓ ଉପକୂଳ-ଉପତ୍ୟକା ସବୁ ଅଛି ଆମ ଓଡ଼ିଶାରେ । ବିସ୍ତୃତ ସାଗରବେଳା, କୋରାପୁଟ ଓ ଦାରିଙ୍ଗିବାଡ଼ି ଭଳି ଶୀତଳ ସ୍ଥାନ, ଚିଲିକା ଓ ଅଂଶୁପା ଭଳି ସୁନ୍ଦରତମ ସ୍ଥାନ ଓ ଦେଓମାଳି ପରି ଉଚ୍ଚତମ ସ୍ଥାନ ଅନ୍ୟ କେଉଁଠି ବା ଦେଖିବାକୁ ମିଳିବ? ଠିକ୍ ସେହିପରି କେନ୍ଦ୍ରାପଡ଼ା ଜିଲ୍ଲାର ଭିତରକନିକା ଅଭୟାରଣ୍ୟ ଓଡ଼ିଶାର ଅନ୍ୟ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟଟନ କ୍ଷେତ୍ର । କେବଳ ଭିତରକନିକା ଅଭୟାରଣ୍ୟ ନୁହେଁ, ସମଗ୍ର ପ୍ରାଚୀନ କନିକା ରାଜ୍ୟର ବିଭିନ୍ନ ଅଂଚଳର ବିଶେଷତ୍ୱ ଯେକୌଣସି ଜ୍ଞାନପିପାସୁ, ଶୋଭାପିପାସୁ ଓ ସୌନ୍ଦର୍ଯ୍ୟପ୍ରେମୀଙ୍କୁ ଆକର୍ଷିତକରି ରଖିବ । କନିକା କହିଲେ, ଅତୀତରେ ଅବିଭକ୍ତ କଟକ ଓ ବାଲେଶ୍ୱର ଜିଲ୍ଲାର ଏକ ବିରାଟ ଭୂଖଣ୍ଡକୁ ବୁଝାଯାଉଥିଲା । ଏହି କନିକା ଥିଲା-ରାଜ୍ୟର ସୀମାନ୍ତ କଳିଙ୍ଗର ପ୍ରବେଶପଥ । ସେଦିନର କନିକା ରାଜ୍ୟ ଆଡ଼-ଦୀର୍ଘରେ ବାଇଶ କୋଶ ବୋଲି କୁହାଯାଉଥିଲା । ଏହା କଳଦ୍ୱୀପ, କେରଡ଼ା, ପାଂଚମୁକା ଓ ଛମୁକା ନାମରେ ଚାରିଟି ମଣ୍ଡଳରେ ବିଭକ୍ତ ହୋଇଥିଲା । କଳିଙ୍ଗ ସାଗର ସହିତ ମିଶିବା ପାଇଁ ଓଡ଼ିଶାର ତିନୋଟି ମୁଖ୍ୟ ନଦୀ ପୁଣ୍ୟତୋୟା ବ୍ରାହ୍ମଣୀ, ଖରସ୍ରୋତା ଓ ବୈତରଣୀ କନିକା ଛାତିରେ ବହି ଯାଉଛନ୍ତି । ତା' ସଂଗେ ସଂଗେ ମନ୍ତେଇ, ଘଡ଼ିଆମାଳ, ପାଟଶାଳା, ହଂସୁଆ ଓ ମାଇପୁରା ଭଳି ନଦୀଗୁଡ଼ିକ ମଧ୍ୟ କନିକା



ମାଟିରେ ବହି ଯାଉଛନ୍ତି । ପ୍ରତ୍ୟେକ ନଦୀ ଏ ମାଟିରେ ସୁଗଭୀର, କ୍ଷିପ୍ର ଓ ସୁନାବ୍ୟା ପୁଣି ସୁପ୍ରଶସ୍ତ । ଏଇ ଚିରସ୍ରୋତା ନଦୀ ନାଳ, ସୁବିସ୍ତୃତ ବେଳାଭୂମି, ଶସ୍ୟ ଶ୍ୟାମଳା କନିକା ଉପକୂଳ, ସମୁଦ୍ର କୂଳର ଲୁଣା ଜଂଗଲ ଏବଂ ନଦୀଶଯ୍ୟାର ପ୍ରାକୃତିକ ଦୃଶ୍ୟ ତଥା ବନ୍ୟଜନ୍ତୁଙ୍କର ଖେଳାଲୀଳା ଦର୍ଶକମାନଙ୍କୁ ବାନ୍ଧି ରଖେ ।

କନିକା ଜଙ୍ଗଲରେ ହରିଣ ନାଚନ୍ତି । ବଣପକ୍ଷୀମାନେ ଗୀତ ଗାଆନ୍ତି । ଗହୀରମଥାର ବାଲୁକା ଶଯ୍ୟାରେ କଇଁଚ ଖେଳନ୍ତି । ସାତଭାୟା ବେଳାରେ ସମୁଦ୍ର ଆସି ମଥାପିଟେ । ଆଉ ଧାମରା ମୁହାଣରେ ଜାହାଜ ଲାଗେ ।

ଏଥିରେ ପର୍ଯ୍ୟଟକର ମନ-ପ୍ରାଣ ଚଂଚଳ ହୋଇଉଠେ । କେରଡ଼ା ଗଡ଼ର ଜଗନ୍ନାଥ ମନ୍ଦିର ଓ ରଥଯାତ୍ରା କନିକା ବିଖ୍ୟାତ । ସେହିପରି ରିଘାଗଡ଼ ମନ୍ଦିରରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ବିଗ୍ରହ କେଉଁକାଳରୁ ପୂଜା ପାଇ ଆସୁଛନ୍ତି । ଶ୍ରୀକ୍ଷେତ୍ର ପୁରୀରେ ରଥ ଅନୁକୂଳ ପରି ଏଠାରେ ମଧ୍ୟ ଅକ୍ଷୟ ତୃତୀୟା ଦିନ ରଥ ନିର୍ମାଣ ଅନୁକୂଳ ହୁଏ । ପରଂପରା ଅନୁସାରେ କନିକାର ରାଜା ରଥରେ ଛେରାପହଁରା କରନ୍ତି । ରାଜ୍ୟସ୍ତରରେ ଏହି ବିଖ୍ୟାତ ମନ୍ଦିର ବିଭିନ୍ନ ସମୟରେ ଚର୍ଚ୍ଚାରେ ରହିଥାଏ ।

କନକଦୁର୍ଗା ଯଦିଓ କନିକା ରାଜାମାନଙ୍କର କୁଳଦେବୀ ବା ଆରାଧ୍ୟ ଦେବୀ, ତଥାପି କନିକାର ଗ୍ରାମେ ଗ୍ରାମେ ବିଷ୍ଣୁ, ମହାଦେବ, ଜଗନ୍ନାଥ ଓ ବିଭିନ୍ନ ଦେବୀ ତଥା ମଙ୍ଗଳାଙ୍କ ଉପାସନା ପୀଠ ରହିଛି । ବିଭିନ୍ନ ସ୍ଥାନରେ ମଠ ନିର୍ମାଣ କରାଯାଇଥିଲା । ଗୋକର୍ଣ୍ଣେଶ୍ୱର ହେଉଛନ୍ତି- କନିକାର ଇଷ୍ଟଦେବତା ତେଣୁ ପାଂଚମୁକା ଅଂଚଳଟି ଶିବଲିଙ୍ଗମୟ ହୋଇରହିଛି । ପ୍ରାଚୀନ କନିକା ରାଜ୍ୟ ବର୍ତ୍ତମାନର ଭଦ୍ରକ ଜିଲ୍ଲା ବାସୁଦେବପୁର ପର୍ଯ୍ୟନ୍ତ ବ୍ୟାପିଥିବାରୁ ଆରଡ଼ିର ବିଖ୍ୟାତ ଆଖଣ୍ଡଳମଣି ମନ୍ଦିରକୁ ମଧ୍ୟ କନିକା ରାଜା ପ୍ରତିଷ୍ଠା କରିଥିଲେ । ବହୁ ଶିବଲିଙ୍ଗ ଥିବାରୁ ନରେନ୍ଦ୍ରପୁର ଗ୍ରାମକୁ କନିକାର କାଶୀପୀଠ ବୋଲି କୁହାଯାଏ । ସମଗ୍ର କନିକା ଅଂଚଳରେ ମୋଟ ୬୦୯ଟି ଦେବଦେବୀ ପୀଠ ବା ମନ୍ଦିର ସ୍ଥାପିତ ହୋଇଥିଲା । ସେଗୁଡ଼ିକ ଆଜିଯାଏ କନିକାବାସୀଙ୍କ ଗ୍ରାମ୍ୟ ଏକତା ଓ ସହଯୋଗ ପ୍ରତିଷ୍ଠାରେ ସହାୟକ ହୋଇଚାଲିଛି ।

କନିକା ରାଜ୍ୟରେ ନଅଟି ଗଡ଼ ନିର୍ମାଣକରି ରାଜାମାନେ ଶାସନକଳକୁ ସକ୍ରିୟ କରିଥିଲେ । ସେଗୁଡ଼ିକ ହେଲା- କେରଡ଼ା ଗଡ଼, ରାଜଗଡ଼, ଭିତରଗଡ଼, ଶ୍ରୀଗଡ଼, ଧୋବେଇଗଡ଼, ହାଣ୍ଡିଆଗଡ଼, ବାଂଶଗଡ଼ ଓ କନିକାଗଡ ନଅଗଡ଼ । ଏହି ଗଡ଼ଗୁଡ଼ିକ ମଧ୍ୟରେ ରାଜଗଡ଼ରେ ନୀଳକଣ୍ଠେଶ୍ୱର ମନ୍ଦିର ପ୍ରତିଷ୍ଠିତ । ସେହିପରି ବାହାରଗଡ଼ରେ ଇଷ୍ଟଦେବୀ ଭାବେ ବାସୁଳେଇ, ଭିତରଗଡ଼ରେ ରାଧାକାନ୍ତଜୀଉ ପୂଜା ପାଇଆସୁଛନ୍ତି । କନିକାର ପୂର୍ବ ଗୌରବର ମୂକସାକ୍ଷୀ ଭାବରେ ରିଘାଗଡ଼ ଜଗନ୍ନାଥ ମନ୍ଦିରଟି ପୁରୀ ଶ୍ରୀମନ୍ଦିର ଶୈଳୀରେ ନିର୍ମିତ । ଖରସ୍ରୋତା ଓ ବ୍ରାହ୍ମଣୀ ନଦୀ ତଟରେ ଅବସ୍ଥିତ କେରଡ଼ାଗଡ଼ କନିକାର ଗୋଟିଏ ପ୍ରସିଦ୍ଧ ପର୍ଯ୍ୟଟନ କ୍ଷେତ୍ର । ସାତଶହ ବର୍ଷତଳର ପଥର ନିର୍ମିତ ଏଠାକାର ମନ୍ଦିର ପରବର୍ତ୍ତୀ କାଳରେ ଆଧୁନିକ ଦେଉଳରେ ପରିଣତ ହୋଇଛି । ଶ୍ରୀକ୍ଷେତ୍ର ପୁରୀ ମନ୍ଦିର ନୀତି ନିୟମ ଅନୁସାରେ ଏଠାରେ ପୂଜା ପାର୍ବଣ ହୁଏ । ନବକଳେବର ମଧ୍ୟ ନିୟମ ଅନୁସାରେ ଅନୁଷ୍ଠିତ ହୁଏ । ସେଠାରେ ଥିବା ଗୋଟିଏ କୂପରେ ତିନିଟି ମୁହଁ ପୁଣି ଗୋଟିଏ ଶିଳାରେ ଦଶଟି ଦିଅଁ ଅର୍ଥାତ ଦଶାବତାର ମୂର୍ତ୍ତି ରହିଛି । ରିଘାଗଡ଼ ଓ କେରଡ଼ାଗଡ଼ର ଜଗନ୍ନାଥ ମନ୍ଦିର କାରୁକାର୍ଯ୍ୟ ଅତ୍ୟନ୍ତ ସୁନ୍ଦର ଓ ଦର୍ଶନୀୟ । କଳଦ୍ୱୀପର ନୀଳସମୁଦ୍ରର ତରଙ୍ଗ ଦର୍ଶକଙ୍କ ମନରେ ଆନନ୍ଦ ଭରିଦେଇଥାଏ ।

କନିକାର ଦେବଭୂମି ଭାବେ ଧାମରା ଖ୍ୟାତ । ଏହା ଏକ ପ୍ରାଚୀନ ବନ୍ଦର ଓ ମାଆ ଧାମରାଈଙ୍କ ପବିତ୍ର ପୀଠ । ବ୍ରାହ୍ମଣୀ ଓ ବୈତରଣୀ ନଦୀର ମିଳନସ୍ଥଳରୁ ସମୁଦ୍ର ପର୍ଯ୍ୟନ୍ତ ନଦୀକୁ ଧାମରା ନଦୀ ଏବଂ ମୁହାଣକୁ ଧାମରା ମୁହାଣ କୁହାଯାଏ । ସ୍ଥଳପଥ ଅପେକ୍ଷା ଜଳପଥରେ କନିକାକୁ ପ୍ରବେଶ କରିବା ସହଜ ହୋଇଥାଏ । ଧାମରାରେ ନୌବିହାର, ନଦୀ, ସମୁଦ୍ର ଓ ଜଙ୍ଗଲର ଭୀମକାନ୍ତ ସୌନ୍ଦର୍ଯ୍ୟକୁ ମନଭରି ଉପଭୋଗ କରିହୁଏ । ଧାମରାର ସୂର୍ଯ୍ୟୋଦୟ ଅତ୍ୟନ୍ତ ଚିତ୍ତାକର୍ଷକ । ପାଂଚମୁକାର ଘଂଟେଶ୍ୱର ଗଡ଼ ମେଳଣ ବେଶ ପ୍ରସିଦ୍ଧି ଲାଭକରିଛି । ସେହିପରି ତୋଟପଡ଼ା ଜଗନ୍ନାଥ ମନ୍ଦିର ବହୁ ପ୍ରାଚୀନ ଓ ଦର୍ଶନୀୟ । ସମୁଦ୍ରକୂଳରେ ଅବସ୍ଥିତ ସାତଭାୟା ଉତ୍କଳର ପ୍ରାଚୀନ ଶକ୍ତିପୀଠ ଓ ତନ୍ତ୍ରପୀଠ ଭାବରେ ପରିଚିତ ହୋଇଥିଲା । ଏଠାରେ ପଂଚବରାହୀ ପୂଜା ପାଆନ୍ତି ।

ଶୈବ ଓ ବୈଷ୍ଣବ ମତବାଦର ଅଭୁତପୂର୍ବ ସମନ୍ୱୟ ଏହି କନିକା ମାଟିରେ ଦେଖିବାକୁ ମିଳେ । କନିକା ଧର୍ମଧାରାରେ ଅନ୍ୟଗୋଟିଏ ବୈଚିତ୍ର୍ୟ ହେଉଛି, ଏଠାରେ ଜଗନ୍ନାଥ, ଦୁର୍ଗା, ବିଷ୍ଣୁ ଓ ଶିବଙ୍କର ମିଳିତ ଭାବରେ

ଉପାସନା କରାଯାଏ । କେଉଁଯୁଗରୁ କନିକାରେ ଶୈବ ମତବାଦ ପ୍ରଭାବରେ ଏକାଦଶ ରୁଦ୍ରଙ୍କ ମଧ୍ୟରୁ ଭୈରବଙ୍କୁ ପୂଜା କରାଯାଉଛି । ଏହା ବ୍ୟତୀତ ରାଜକନିକାରେ ଗୋକର୍ଣ୍ଣେଶ୍ୱର ମହାଦେବ କନିକାଗଡ଼ର ଇଷ୍ଟଦେବ ଭାବରେ ପୂଜା ପାଆନ୍ତି । ସେହିପରି କୁଳଦେବୀ ଭାବରେ କନକଦୁର୍ଗା ପୂଜିତା । କଥିତ ଅଛି-ଏହି ମହାଦେବ ପାତାଳଫୁଟା ଶିବଲିଙ୍ଗ । ରାବଣ ଏହି ଶିବଲିଙ୍ଗଙ୍କୁ ଉପାଡ଼ି ଲଙ୍କାପୁରକୁ ନେଇଯିବାକୁ ଚେଷ୍ଟାକରି ବିଫଳ ହୋଇଥିଲେ । ସେ ଆଣ୍ଠେଇ ଥିବା ସ୍ଥାନରେ ଦୁଇଟି ବଡ଼ ପୁଷ୍କରିଣୀ ସୃଷ୍ଟି ହୋଇଥିବାର ପ୍ରବାଦ ଅଛି । ଗୋକର୍ଣ୍ଣେଶ୍ୱର ମହାଦେବଙ୍କ ଅଲୌକିକ ଶକ୍ତି ଓ ଅପାର କରୁଣାରୁ କନିକାବାସୀଙ୍କ ରିଷ୍ଟ ଖଣ୍ଡନ ହୁଏ । କବିଶେଖର ଚିନ୍ତାମଣି କନିକା ଗଡ଼ର ଗୋକର୍ଣ୍ଣେଶ୍ୱର ମହାଦେବଙ୍କ ମହିମା ସଂପର୍କରେ ମୁକୁନ୍ଦଦେବ କବିତାରେ ଲେଖିଛନ୍ତି-

ଅଧିଷ୍ଠିତ ଯହିଁ ଦେବ ଗୋକର୍ଣ୍ଣେଶ୍ୱର,
ଅତୁଳ ପ୍ରଭାବୀ ଶିବ, ସ୍ୱୟଂ ଲଙ୍କେଶ୍ୱର,
ନପାରି ଉପାଡ଼ି ଯାଙ୍କୁ ବାହୁଡ଼ିଲା ଲାଜେ
ରାଜେ ପୁଷ୍କରିଣୀ ରୂପେ ଆଣ୍ଠୁ ଚିହ୍ନ ତା'ର ।

ରାଜକନିକାର ଉପକଣ୍ଠରେ ଅବସ୍ଥିତ କାଳିକାପୁରରେ ବିଦ୍ୟମାନ ପ୍ରଧାନ ଶକ୍ତିପୀଠରେ ମାଆ କାଳିଜାଈ ପୂଜିତା । ସେ ହେଉଛନ୍ତି-ନାବିକମାନଙ୍କଦ୍ୱାରା ପୂଜିତା ସମୁଦ୍ରକନ୍ୟା । ବାଳିକା ରୂପରେ ସେ ମଙ୍ଗ ଉପରେ ବସି କନିକାକୁ ଆସିଥିବାର ଜନଶ୍ରୁତି ରହିଛି । ସେହିପରି ରାଜକନିକାର ଅନତି ଦୂରରେ ଅବସ୍ଥିତ ଶିଆଳିଆ ଗ୍ରାମରେ ମାଆ ଖରାଖାଇ ମୁକ୍ତାକାଶରେ ପୂଜା ପାଆନ୍ତି । ଦଶଭୁଜା ଦୁର୍ଗା ରୂପୀ ମାଆ ସାକ୍ଷାତ୍ ଶକ୍ତି ସ୍ୱରୂପା । ମହାକାଳୀ ଓ ମହାମାୟୀ ଦୁର୍ଗାଙ୍କର ମିଶ୍ରିତ ରୂପ । ସେହି ଗ୍ରାମର ଶବାରୂଢ଼ା ଖରାଖାଇ ଦେବୀଙ୍କ ଅଖଣ୍ଡ ବିଶ୍ୱାସରେ କାହାରି ଦାଣ୍ଡ ଦୁଆରେ କବାଟ ଲାଗିନାହିଁ । ସେ ଗ୍ରାମରେ ଅତୀତରେ କେବେ ଚୋରି ହେଇନାହିଁ, ଏବେ ବି ଚୋରି ଭୟ ନାହିଁ । ଆଧୁନିକ ଯୁଗରେ ବିଶ୍ୱାସଦ୍ୱାରା ଲୋକେ ଘରେ କବାଟ ଲଗାଉ ନାହାନ୍ତି, ଏ କଥାର ସତ୍ୟତା ଓ ରହସ୍ୟ ଜାଣିବାକୁ ବିଭିନ୍ନ ଅଂଚଳରୁ ଦର୍ଶକ ନିୟମିତ ଆସିଥାନ୍ତି ।

ସେହିପରି ବାରଗାଆଁ ନାମକ ଗ୍ରାମର ଗ୍ରାମଦେବୀ ମାଟିଆ ମଙ୍ଗଳାଙ୍କ ଆଦେଶ ଥିବା ବିଶ୍ୱାସରେ ବାରଖଣ୍ଡ ଗ୍ରାମରେ ଧାନକୁଟିବା ପାଇଁ ଢିଙ୍କି ଓ ସୂତା କାଟିବା ପାଇଁ ଅରଟ ବା କପାଖାଇ ଯନ୍ତ୍ର କାହାରି ଘରେ ନଥିଲା କି ଏବେ ବି ନାହିଁ । ଭିତରକନିକା ଜଙ୍ଗଲ ମଧ୍ୟରେ ଥିବା ଡାଙ୍ଗମାଳ ଗ୍ରାମରେ ଶବର ସଂପ୍ରଦାୟର ଆରାଧ୍ୟାଦେବୀ ପତ୍ରସର୍ବରୀ ବା ପତର ଶଉରା ପୂଜା ପାଆନ୍ତି । ସେହିଠାରୁ ଅଳ୍ପଦୂରରେ କନିକା ରାଜବଂଶର ଆରାଧ୍ୟାଦେବୀ ଜୟଦୁର୍ଗାଙ୍କ ପୀଠ ଅବସ୍ଥିତ । ଏହି ପୀଠରେ ମହାଦେବ, ଭୈରବୀ ନାଗା, ଅନନ୍ତ ବିଷ୍ଣୁ, ବୁଦ୍ଧଙ୍କର ମୂର୍ତ୍ତି ଦେଖିବାକୁ ମିଳେ । ଅତୀତରେ ସେଠାରେ ବୌଦ୍ଧବିହାର ଥିବା ଅନୁମାନ କରାଯାଏ । ସୁନ୍ଦର କାରୁକାର୍ଯ୍ୟପୂର୍ଣ୍ଣ ସୁବିଶାଳ ପ୍ରସ୍ତର ବୁଦ୍ଧମୂର୍ତ୍ତି ଦେଖି ଦର୍ଶକମାନେ ଆମୋଦିତ ହୁଅନ୍ତି ।

ସାତଭାୟା ହେଉଛି-ସମୁଦ୍ର ଉପକଣ୍ଠରେ ଅବସ୍ଥିତ ପ୍ରସିଦ୍ଧ ଶକ୍ତିପୀଠ । ମାଆ ପଂଚବରାହୀ ହେଉଛନ୍ତି-ପଂଚମାତୃକା । ଏଠାକାର ଅଧିଷ୍ଠାତ୍ରୀ ଦେବୀ ବରାହୀ ହେଉଛନ୍ତି-ଯଜ୍ଞ ବରାହଙ୍କ ଶକ୍ତିରୂପା । ମୂର୍ତ୍ତିଗୁଡ଼ିକର ଶରୀର ଗଠନ ନାରୀପରି ଓ ମୁଖମଣ୍ଡଳ ହେଉଛି-ବରାହ ପରି । ପାଂଚଟି ବରାହମୁଖୀ ଦେବୀଙ୍କର ମଧ୍ୟ ଭିନ୍ନ ଭିନ୍ନ ନାମ ରହିଛି ଯଥା- ପଂଚବରାହୀ, ଜଂଜାଳି, କମଳିନୀ, ସରଳାବାଳା, ବାଟକୁମାରୀ । ଏହି ଦେବୀମାନେ ଏକତ୍ର ରହୁଥିବାରୁ ତାଙ୍କର ନାମ ପଂଚବରାହୀ ଭାବେ ପରିଚିତ । ଏମାନେ ମାଆ ଧାମରାଈଙ୍କ ଭଉଣୀ ଭାବରେ ମଧ୍ୟ ପରିଚିତା । ଏହି ଠାକୁରାଣୀଙ୍କୁ ପୁରୁଷମାନେ ପୂଜା କରିବା ମନା । ଏହା ପ୍ରାଚୀନ ଓଡ଼ିଶାର ଏକ ପ୍ରସିଦ୍ଧ ତନ୍ତ୍ରପୀଠ ଥିଲା । ତଅପୋଈର ସାତଭାଇ ଏଠାରେ ଗ୍ରାମ ବସାଇ ଥିବାରୁ ଏହି ସ୍ଥାନର ନାମ ସାତଭାୟା ହୋଇଛି ବୋଲି ଲୋକମୁଖରୁ ଜଣାଯାଏ । କବିବର ରାଧାନାଥ ରାୟଙ୍କ ପୁତ୍ର ଶଶିଭୂଷଣ ରାୟ ତାଙ୍କର କନିକା ଦର୍ଶନ ପୁସ୍ତକରେ ସାତଭାୟା ସଂପର୍କରେ ଲେଖିଛନ୍ତି-ଏହା ସମୁଦ୍ର ତୀରବର୍ତ୍ତୀ ସ୍ଥାନ କନିକା ରାଜ୍ୟ ମଧ୍ୟରେ କାହିଁକି ସମଗ୍ର ଉତ୍କଳରେ ଫେନୀଳ, ନୀଳ, ଅନନ୍ତ ସମୁଦ୍ର ଶୋଭାର ଉପଭୋଗ୍ୟ ସ୍ଥାନ ରୂପେ ପରିଗଣିତ ।

ରାଜନଗରଠାରୁ ଦୁଇ କିଲୋମିଟର ଦୂରରେ ବ୍ରାହ୍ମଣୀ ଓ ଖରସ୍ରୋତା ନଦୀର ମିଳନସ୍ଥଳ ନିକଟରେ ବାରଗାଁର ମଙ୍ଗଳା ପୀଠ ଅବସ୍ଥିତ । ଠାକୁରାଣୀଙ୍କ ଆଦେଶ ଥିବା ବିଶ୍ୱାସରେ ସେଠାରେ ଥିବା ବାରଖଣ୍ଡ ଗ୍ରାମରେ ଢିଙ୍କି ବ୍ୟବହାର କରାଯାଏ ନାହିଁ । ଭକ୍ତମାନେ ଠାକୁରାଣୀଙ୍କ



ମାନସିକ ନଡ଼ିଆକୁ ଜଳପଥରେ ଦୂରରୁ ପଠାଇଥାନ୍ତି । ସେହିପରି ବ୍ରାହ୍ମଣୀ ଓ ବୈତରଣୀ ନଦୀର ମିଳନସ୍ଥଳ ନିକଟରେ ଅବସ୍ଥିତ ବଜ୍ରପୁର ଗ୍ରାମରେ ବାସୁଳି ଦେବୀଙ୍କ ପୀଠ ଅବସ୍ଥିତ । ଏଠାରେ ଅନୁଷ୍ଠିତ ହେଉଥିବା ବଳିବାସୁଳି ବିବାହ ଉତ୍ସବ ଓ ଓରାଯାତ୍ରାର ଖ୍ୟାତି ରହିଛି ।

ରାଜକନିକା ରାଜବାଟିର ସିଂହଦ୍ୱାର ସମ୍ମୁଖରେ ବିଖ୍ୟାତ ଚନ୍ଦନ ପୋଖରୀ ଅବସ୍ଥିତ । ଗୋପାଳଜୀଉ ହେଉଛନ୍ତି- କନିକାରାଜାଙ୍କର ଘରଠାକୁର । ଆଦିପୀଠ ରିଘାଗଡ଼ରୁ ସେ ରାଜବାଟିକୁ ଆସିଛନ୍ତି । ଗଣକବି ବୈଷ୍ଣବ ପାଣିଙ୍କର ଏହା ଥିଲା ସାଧନାପୀଠ । ଚାନ୍ଦବାଲି ବଜାରର ପୂର୍ବରେ କାଣ୍ଡଗରଡ଼ି ଗ୍ରାମରେ କୈବର୍ତ୍ତ ପୂଜିତା ମାଆ ଡାକେଶ୍ୱରୀଙ୍କ ପୂଜାପୀଠ ଅବସ୍ଥିତ । ବକ୍ରମୁଖୀ ଦେବୀ ପଶ୍ଚିମ ଦିଗକୁ ରହିଛି । ଦ୍ୱାଦଶଭୁଜା ଦେବୀ ଡାକେଶ୍ୱରୀଙ୍କୁ ତାନ୍ତ୍ରିକ ମତରେ ପୂଜା କରାଯାଏ । ଏହି ପୀଠକୁ ଶାକ୍ତ, ବୌଦ୍ଧ ଓ ବ୍ରାହ୍ମଣଧର୍ମର ସମନ୍ୱୟ ପୀଠ ଭାବରେ ସ୍ୱତନ୍ତ୍ର ଖ୍ୟାତି ମିଳିଥିଲା । ଚାମୁଣ୍ଡା ସ୍ୱରୂପା ଦେବୀ ଡାକେଶ୍ୱରୀ ହେଉଛନ୍ତି-ଚଉଷଠି ଯୋଗିନୀମାନଙ୍କ ମଧ୍ୟରୁ ଅନ୍ୟତମ । ମତୋ ଓ ଘଂଟେଶ୍ୱର ଅଂଚଳରେ ଲଙ୍କେଶ୍ୱରୀ ମଙ୍ଗଳା ଦେବୀ ପାଟଣ ମଙ୍ଗଳା ଭାବରେ ପରିଚିତା ହୋଇ ନରେନ୍ଦ୍ରପୁର ଗ୍ରାମରେ ପୂଜା ପାଆନ୍ତି । ଖୁଲଣାସୁନ୍ଦରୀ କାହାଣୀ ସହିତ ଏହି ସନ୍ତାନଧାରିଣୀ ଦେବୀଙ୍କର ଘନିଷ୍ଠତା ରହିଆସିଛି ।

କାଟଣାର କପିଳେଶ୍ୱର ମହାଦେବ ମନ୍ଦିର ରାଜା କପିଳେନ୍ଦ୍ର ଦେବଙ୍କ ଦ୍ୱାରା ନିର୍ମିତ ହୋଇଥିବାର ଶୁଣାଯାଏ । କନିକାରେ ଘରେ ଘରେ କପିଳେଶ୍ୱରଙ୍କ ମେଳା ଅନୁଷ୍ଠିତ ହୁଏ । ବଡ଼ାଗ ଗ୍ରାମରେ ପ୍ରାଚୀନ ଗୋପିନାଥ ମନ୍ଦିରରେ ଗୋପିବଲ୍ଲଭ ପୂଜା ପାଇ ଆସୁଛନ୍ତି । ଗଞ୍ଜା ଗ୍ରାମରେ ନୃସିଂହନାଥ ଶାଳଗ୍ରାମ ମୂର୍ତ୍ତି ଓ ପାର୍ଶ୍ୱ ଦେବତାମାନେ ଏବଂ ଗିରିୟା ଗ୍ରାମରେ ଉପାସ୍ୟ ଦେବତା ଭାବରେ ରାଧାକାନ୍ତ ପୂଜା ପାଆନ୍ତି । କହିବାକୁ ଗଲେ- କନିକା ଭୂଖଣ୍ଡଟି ବିଭିନ୍ନ ସଂପ୍ରଦାୟର ଦେବଦେବୀଙ୍କ ପୀଠରେ ସମୃଦ୍ଧ । ସେହିପରି ସ୍ଥାପତ୍ୟ, ଉପାସନା ସ୍ଥଳୀ, ପର୍ଯ୍ୟଟକମାନଙ୍କ ଉପଯୋଗୀ ଦର୍ଶନୀୟ ସ୍ଥାନ କନିକା ମାଟିରେ ବହୁ ପୁରୁଣା କାଳରୁ ରହି ଆସିଛି ।

ପୂର୍ବତନ ନିର୍ଦ୍ଦେଶକ, ଆକାଶବାଣୀ-ଜୟପୁର
ଘର. ନଂ- ଭି-ଆଇ-ଏମ୍-୫୫
ଶୈଳଶ୍ରୀ ବିହାର, ଭୁବନେଶ୍ୱର-୭୫୧୦୨୧



# ଆରାଧ୍ୟ ଦେବତା ବଳଦେବ ଦେବୀ ସୁଭଦ୍ରା ଓ ଶ୍ରୀଜଗନ୍ନାଥ

ଶ୍ୟାମ ସୁନ୍ଦର ବ୍ରହ୍ମଚାରୀ

କେନ୍ଦ୍ରାପଡା ସହର ଇଚ୍ଛାପୁର ଗ୍ରାମରେ ପୁରାଣ ପ୍ରସିଦ୍ଧ ତୁଳସୀକ୍ଷେତ୍ର ବିଦ୍ୟମାନ । ଏହି ତୁଳସୀ କ୍ଷେତ୍ରରେ ସିଦ୍ଧ ବଳଦେବ ଜୀଉ ସ୍ୱଇଚ୍ଛାରେ ବିଜେ କରିଥିବାରୁ କେନ୍ଦ୍ରାପଡା ଜନମାନସରେ ପ୍ରସିଦ୍ଧି ଲାଭ କରିଅଛି । ଦୈନନ୍ଦିନ ଅଗଣିତ ଭକ୍ତ ତୁଳସୀ କ୍ଷେତ୍ରାଧିପତି ଶ୍ରୀସିଦ୍ଧବଳଦେବଙ୍କୁ ଦର୍ଶନ କରି ତାଙ୍କର ଅପାର କରୁଣା ଲାଭ କରି ନିଜକୁ ଧନ୍ୟ ମନେକରନ୍ତି । ସେହିପରି ପର୍ଯ୍ୟଟନ ମାନଚିତ୍ରରେ ସ୍ଥାନିତ କେନ୍ଦ୍ରାପଡା ସଖୀବଟ ସଂଖ୍ୟାଧିକ ବଟବୃକ୍ଷ ଦ୍ୱାରା ଆଚ୍ଛାଦିତ ଅନ୍ୟତମ ପ୍ରସିଦ୍ଧ ସ୍ଥାନ । କେନ୍ଦ୍ରାପଡ଼ା ବଳଦେବ ଜୀଉ ମନ୍ଦିରଠାରୁ ମାତ୍ର ତିନିଚାରି ମାଇଲ ଦୂରରେ କଟକ-ପାରାଦ୍ୱୀପ ଏକ୍ସପ୍ରେସ୍ ରୋଡ୍ ଦକ୍ଷିଣ ପାର୍ଶ୍ୱରେ ପ୍ରାକୃତିକ ସୌନ୍ଦର୍ଯ୍ୟଭରା ଅତୀବ ରମଣୀୟ ମନୋରମ ସ୍ଥାନ ସଖୀବଟ ଅବସ୍ଥିତ । କଥିତ ଅଛି - ସଖୀବଟରେ ସିଦ୍ଧବଳଦେବ ଜୀଉ ମହାପ୍ରଭୁ ଭାଇ ଜଗନ୍ନାଥ ଏବଂ ଭଉଣୀ ସୁଭଦ୍ରାଙ୍କ ସହିତ ରାହାସ ଲୀଳା କରିଥିଲେ । ଆଜି ସଖୀବଟ ପର୍ଯ୍ୟଟନ ମାନଚିତ୍ରରେ ସ୍ଥାନ ପାଇବାର ଗୌରବ ଅର୍ଜନ କରି ଜନମନ ଆକୃଷ୍ଟ କରିଚାଲିଛି । ସଖୀବଟରେ ଯଜ୍ଞ ଅନୁଷ୍ଠାନ, ବର୍ଷସାରା ଧର୍ମାଲୋଚନା, ଧର୍ମସଭା, ପୁରାଣ ପାଠ ସଖୀବଟର ମହତ୍ତ୍ୱ ଓ ଗୁରୁତ୍ୱ ଦିନକୁ ଦିନ ବଢାଇ ଚାଲିଛି । ବର୍ଷର ଅଧିକାଂଶ ସମୟରେ ପର୍ଯ୍ୟଟକମାନେ ମଧ୍ୟ ଭିତରକନିକା ଭ୍ରମଣ ସାରି କେନ୍ଦ୍ରାପଡା ବଳଦେବ ଜୀଉଙ୍କୁ ଦର୍ଶନ କରି ସଖୀବଟ ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ଆଧ୍ୟାତ୍ମିକ ଚିନ୍ତାଧାରା ଅବଲୋକନ କରିଯିବାକୁ ଭୁଲି ନ ଥାନ୍ତି । ତୁଳସୀ କ୍ଷେତ୍ରାଧିପତି ଶ୍ରୀବଳଦେବ ଜୀଉଙ୍କ ଗୁପ୍ତକ୍ଷେତ୍ର ସଖୀବଟ ଉନ୍ନୟନ ପରିଷଦ ପ୍ରତିବର୍ଷ ଅଗଣିତ ଭକ୍ତ, ଦର୍ଶକ ସାଧୁସନ୍ଥ ସମାବେଶ ମଧ୍ୟରେ ବିଶ୍ୱ ଶାନ୍ତି ଯଜ୍ଞ, ହରିହାଟ ଅନୁଷ୍ଠାନ, ସଖୀବଟ ଯଜ୍ଞ ସ୍ମରଣିକା ପ୍ରକାଶ କରି ଜଗତବାସୀଙ୍କର ମଙ୍ଗଳ କାମନା କରିଚାଲିଛି ।

ଆନୁମାନିକ ପ୍ରାୟ ଷୋଡଶ ଶତାବ୍ଦୀରେ କଳାପାହାଡ ଓଡିଶା ଆକ୍ରମଣ କରି ଅସଂଖ୍ୟ ହିନ୍ଦୁ ଦେବାଦେବୀଙ୍କ ମଠ ମନ୍ଦିର ଭାଙ୍ଗି ମାଟିରେ ମିଶାଇ ଦେଇଥିଲେ । ଏହି ସମୟରେ କେନ୍ଦ୍ରାପଡା ବଳଦେବ ଜୀଉଙ୍କ ମନ୍ଦିର ପ୍ରତି ବିପଦ ଆଶଙ୍କା କରି ତାଙ୍କର ସେବକମାନେ ତାଙ୍କର ଆରାଧ୍ୟ ଦେବତା ବଳଦେବଙ୍କୁ ସଖୀବଟରେ ଲୁଚାଇ ରଖିଥିଲେ । ସମୟର ଅତିକ୍ରାନ୍ତ ସଂଗେ ସଂଗେ ଘଟଣାଚକ୍ରରେ ସଖୀବଟ ମଠ ଗଢି ଉଠିଲା । ଇତିହାସ କହେ-କୁଜଙ୍ଗ ରାଜା ଶ୍ରୀଗୋପୀନାଥ ନରେନ୍ଦ୍ରଦେବ ରାତ୍ରିର ଘନ ଅନ୍ଧକାର ମଧ୍ୟରେ ଠାକୁରମାନଙ୍କୁ ଡଙ୍ଗାରେ କୁଜଙ୍ଗଗଡକୁ ନେଇଯାଉଥିବା ବେଳେ ଅଚାନକ ଝଡତୋଫାନ ମାଡିଆସିଲା ଏବଂ ଡଙ୍ଗା ପ୍ରବଳ ପବନରେ ଅଣାୟତ୍ତ ହୋଇ ଏକ ବାଲିକୁଦ ଉପରେ ଚଢିଯାଇଥିଲା । ପରେ ପରେ ରାଜାଙ୍କୁ ସ୍ୱପ୍ନାଦେଶ ହେବାରୁ ବଳଦେବ ଜୀଉଙ୍କ ସ୍ୱପ୍ନାଦେଶକୁ ସମ୍ମାନ ଦେଇ ରାଜା ସେହିଠାରେ ବଳଦେବ ଜୀଉଙ୍କ ମନ୍ଦିର ନିର୍ମାଣ କଲେ । ଠାକୁରଙ୍କ ଦୈନନ୍ଦିନ ସେବା ପୂଜା ଯାନିଯାତ୍ରା ସୁପରିଚାଳନା ନିମନ୍ତେ ଜମିବାଡି ଖଞ୍ଜିଦେଲେ । ନିଜେ କୁଜଙ୍ଗ ରାଜା ଶ୍ରୀବଳଦେବ ଜୀଉଙ୍କ ରଥଯାତ୍ରା ଅନୁଷ୍ଠାନ କରାଇ ରଥରେ ଛେରାପହଁରା କରିଥଲେ । ଶ୍ରୀବଳଦେବ ଜୀଉ ନିଜ ଇଚ୍ଛାରେ ସେହି ସ୍ଥାନରେ ବିଜେ କରିବାରୁ ସ୍ଥାନଟି ଇଚ୍ଛାପୁର ନାମରେ ବିଖ୍ୟାତ

ହେଲା । ବର୍ତ୍ତମାନ ସେହି ଇଚ୍ଛାପୁର ଗ୍ରାମରେ ଭାଇ ଜଗନ୍ନାଥ ଓ ଭଉଣୀ ସୁଭଦ୍ରାଙ୍କ ସହ ଶ୍ରୀସିଦ୍ଧବଳଦେବ ଜୀଉ ବିଜେ ହୋଇ ନିତିଦିନ ଅଗଣିତ ଜନ ମାନବଙ୍କୁ ଦର୍ଶନ ଦେଇ ଆସୁଛନ୍ତି । କଠିନ ଦୁରାରୋଗ୍ୟ ରୋଗରୁ ଆରୋଗ୍ୟ ପାଇଁ ଶ୍ରୀସିଦ୍ଧବଳଦେବଙ୍କୁ ଚନ୍ଦନ ତୁଳସୀ ଲାଗିକରି ଫଳ ପାଇଥାନ୍ତି । ଭକ୍ତମାନେ ଦୂରଦୂରାନ୍ତରୁ ନୂଆ ମାଟିହାଣ୍ଡିରେ ଡାଲି ଚାଉଳ ଭାର କାନ୍ଧରେ ଧରି ଆସିଥାନ୍ତି ଏବଂ ମନ୍ଦିରରେ ପ୍ରସାଦ କରାଇ ଅନ୍ୟମାନଙ୍କୁ ମଧ୍ୟ ଆପ୍ୟାୟିତ କରି ଅପାର ଆନନ୍ଦ ପାଇଥାନ୍ତି । କେନ୍ଦ୍ରାପଡା ସହର ଆରମ୍ଭରେ ଇଚ୍ଛାପୁର ଗ୍ରାମରେ ତୁଳସୀକ୍ଷେତ୍ର ଅବସ୍ଥିତ। ଜଗନ୍ନାଥଙ୍କ ଜ୍ୟେଷ୍ଠ ଭ୍ରାତା ବଳଦେବ ତୁଳସୀ କ୍ଷେତ୍ରାଧିପତି ଶ୍ରୀସିଦ୍ଧ ବଳଦେବ ଜୀଉ ନାମରେ ପ୍ରସିଦ୍ଧ ଲାଭ କରିଛନ୍ତି । କେଉଁ ଅନାଦି କାଳରୁ ଭଉଣୀ ସୁଭଦ୍ରା ଭାଇ ଜଗନ୍ନାଥଙ୍କ ସହ ପୂଜା ପାଉଛନ୍ତି । କେନ୍ଦ୍ରାପଡା ସିଦ୍ଧ ବଳଦେବ ଜୀଉଙ୍କ ପ୍ରସିଦ୍ଧ ରସାବଳୀ ଭୋଗ ଅତି ସୁସ୍ୱାଦୁ ଏବଂ ଅତି ଆଦରଣୀୟ ଛେନାଭୋଗ । ଅଗଣିତ ଭକ୍ତ ବର୍ଷର ୧୨ମାସ କେନ୍ଦ୍ରାପଡା ସିଦ୍ଧ ବଳଦେବ ଜୀଉଙ୍କୁ ଦର୍ଶନ କରି ତାଙ୍କର କୃପାଲାଭ କରିଥାନ୍ତି ଏବଂ ତାଙ୍କର ରଥଯାତ୍ରା ଦେଖି ନିଜକୁ ଧନ୍ୟ ମନେକରିଥାନ୍ତି । ବଳଦେବ ଜୀଉଙ୍କ ରଥଯାତ୍ରାରେ ଅସଂଖ୍ୟ ଲୋକଙ୍କ ଜନସମାଗମ ସ୍ଥାନଟିକୁ ଆନନ୍ଦ ମୁଖରିତ କରିଦିଏ । ପ୍ରତିବର୍ଷ ରଥରେ ବଳଦେବ, ସୁଭଦ୍ରା ଓ ଜଗନ୍ନାଥଙ୍କୁ ଦର୍ଶନ କରି ଭକ୍ତମାନେ ଆଧ୍ୟାତ୍ମିକ ଚିନ୍ତାଧାରା ଓ ଚେତନାରେ ଉଦ୍‌ବୁଦ୍ଧ ହୋଇଥାନ୍ତି ।

କେନ୍ଦ୍ରାପଡା ଶ୍ରୀସିଦ୍ଧବଳଦେବ ଜୀଉ ମନ୍ଦିରଠାରୁ ଦେଢଶହ କିଲୋମିଟର ଦୂର ବଙ୍ଗୋପସାଗର ଅନତି ଦୂରରେ ପୁରୀ ସହରରେ ଶ୍ରୀବଳଦେବ, ସୁଭଦ୍ରା, ଜଗନ୍ନାଥ ରତ୍ନବେଦୀରେ ପୂଜା ପାଉଛନ୍ତି । ଏହି ମନ୍ଦିର ଜଗନ୍ନାଥ ମନ୍ଦିର ନାମରେ ପୃଥିବୀ ବିଖ୍ୟାତ । ସେ ହେଉଛନ୍ତି - ପୁରୁଷୋତ୍ତମ ନିବାସୀ ଶ୍ରୀଜଗନ୍ନାଥ ଓଡିଆଜାତିର ଚିରନମସ୍ୟ ଓ ପରମ ଆରାଧ୍ୟ ଦେବତା - ଜଗତରନାଥ ପ୍ରଭୁ ଶ୍ରୀଜଗନ୍ନାଥ । ଶ୍ରୀଜଗନ୍ନାଥ ସ୍ୱୟଂ ଭଗବାନ । ହିନ୍ଦୁଧର୍ମର ମୂଳଗ୍ରନ୍ଥ ବେଦ, ଉପନିଷଦ, ଶ୍ରୀମଦ୍ ଭାଗବତ ପ୍ରଭୃତି ପୁରାଣମାନଙ୍କରେ ଶ୍ରୀଜଗନ୍ନାଥଙ୍କୁ ସ୍ୱୟଂ ଭଗବାନ ସ୍ୱୀକାର କରାଯାଇଅଛି । ପୃଥିବୀ ମାନଚିତ୍ରରେ ଭାରତବର୍ଷର ଓଡିଶା ପ୍ରଦେଶର ପୁରୀ ସହରରେ ଶ୍ରୀଜଗନ୍ନାଥ ଦାରୁଦେବତା ରୂପରେ ଅବସ୍ଥାନ କରୁଥିବାରୁ ପୁରୀ ଦାରୁକ୍ଷେତ୍ର ଏବଂ ପ୍ରଭୁ ଜଗନ୍ନାଥ ଦାରୁଦେବତା ନାମରେ ପରିଚିତ । ତେଣୁ ଯଥାର୍ଥରେ କୁହାଯାଇଅଛି -

ଭାରତେ ଉତ୍କଳେ ଦେଶେ ଭୂସ୍ୱର୍ଗେ ପୁରୁଷୋତ୍ତମେ
ଦାରୁରୂପୀ ଜଗନ୍ନାଥଃ ଭକ୍ତାନାମ ଭୟପ୍ରଦଃ ।

ଭାରତ ମଧ୍ୟରେ ଓଡିଶା ଏବଂ ଓଡିଶାରେ ଶ୍ରୀକ୍ଷେତ୍ର ବା ପୁରୀ ଏକ ପୃଥିବୀ ପ୍ରସିଦ୍ଧ ସ୍ଥାନ। ପ୍ରକୃତରେ ଭୂସ୍ୱର୍ଗରୂପେ କଥିତ ପୁରୁଷୋତ୍ତମ କ୍ଷେତ୍ରରେ କେଉଁ ପୁରାତନ କାଳରୁ ଦାରୁବ୍ରହ୍ମ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ତାଙ୍କର ଭକ୍ତମାନଙ୍କୁ ଅଭୟ ପ୍ରଦାନ କରି ବିଦ୍ୟମାନ ଅଛନ୍ତି । ଦ୍ୱାଦଶ ଶତାବ୍ଦୀରେ ଗଙ୍ଗବଂଶର ରାଜା ଅନନ୍ତ ବର୍ମନ ଚୋଡଗଙ୍ଗଦେବ ଶ୍ରୀମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ । ଅନଙ୍ଗ ଭୀମଦେବ ଏହି କାର୍ଯ୍ୟକୁ ସଂପୂର୍ଣ୍ଣ କରି ଶ୍ରୀବିଗ୍ରହମାନଙ୍କୁ ଅଧିଷ୍ଠିତ କରାଇଥିଲେ ।

୧୪୫୨ ଖ୍ରୀଷ୍ଟାବ୍ଦରେ ଗଜପତି କପିଳେନ୍ଦ୍ରଦେବ ମନ୍ଦିର ଚତୁଃପାର୍ଶ୍ୱରେ ମେଘନାଦ ପାଚେରି ନିର୍ମାଣ କରିଥିଲେ । ଶ୍ରୀମନ୍ଦିର ମଧ୍ୟସ୍ଥ ରତ୍ନସିଂହାସନରେ ୧) ଶ୍ରୀବଳଭଦ୍ର, ୨)ଦେବୀସୁଭଦ୍ରା, ୩) ସ୍ୱୟଂ ଚକାନୟନ ଶ୍ରୀଜଗନ୍ନାଥ, ୪) ସୁଦର୍ଶନ, ୫) ଦାରୁମୂର୍ତ୍ତି ମାଧବ, ୬) ସ୍ୱର୍ଣ୍ଣମୂର୍ତ୍ତି ଶ୍ରୀଦେବୀ ଓ ୭) ରୌପ୍ୟମୂର୍ତ୍ତି ଭୂଦେବୀ ଏପରି ସାତ ଠାକୁର ବିଜେ କରିଛନ୍ତି । ଶ୍ରୀମନ୍ଦିର ନୀଳଚକ୍ର ଉପରେ ପତିତପାବନ ବାନା ଅହରହ ଫରଫର ଉଡି ଜଗନ୍ନାଥ ଧର୍ମ ଓ ଶାନ୍ତିବାଣୀ ସାରାବିଶ୍ୱକୁ ପ୍ରଚାର କରିଚାଲିଛି । ଶ୍ରୀଜଗନ୍ନାଥ ଧର୍ମର ମହିମା ଏବଂ ପତିତପାବନ ବାନାର ଆକର୍ଷଣ ଖାଲି ସାଧୁସନ୍ଥ ଭକ୍ତ ନୁହେଁ, ଦେଶ ବିଦେଶର ଅସଂଖ୍ୟ ଜଗନ୍ନାଥ ପ୍ରେମୀ, ଅନିସନ୍ଧିତ୍ସୁମାନଙ୍କୁ ପ୍ରତିଦିନ ଚୁମ୍ବକ ସଦୃଶ ଟାଣିଆଣି ବଡଦାଣ୍ଡ, ମନ୍ଦିରରେ ଜନସମାଗମ କରିଚାଲିଛି । ସେମାନେ ଜଗନ୍ନାଥଙ୍କ କୃପାଲାଭ ପାଇଁ ଶ୍ରୀକ୍ଷେତ୍ର ପୁରୀରେ ଏକତ୍ରିତ ହେଉଛନ୍ତି ଏବଂ ଜଗନ୍ନାଥଙ୍କୁ ଅପଲକ ନେତ୍ରରେ ଦର୍ଶନ କରି ନିଜକୁ ହଜାଇ ଦିଅନ୍ତି । ସ୍ୱଚକ୍ଷୁରେ ଜଗନ୍ନାଥଙ୍କୁ ଦର୍ଶନ କରି ମନରେ ଅପାର ଆନନ୍ଦ ଓ ହୃଦୟରେ ଗଭୀର ସାନ୍ତ୍ୱନା ଲାଭକରନ୍ତି ।

ପ୍ରଭୁ ଜଗନ୍ନାଥ ହେଉଛନ୍ତି - ସାକ୍ଷାତ୍ ପରଂବ୍ରହ୍ମ । ସେ ଅଦ୍ୱିତୀୟ ଏବଂ ମୂର୍ତ୍ତିବନ୍ତ ଠାକୁର। କଳିଯୁଗର ସେ ଜୀବନ୍ତ ଏବଂ ଏକମାତ୍ର ପରିତ୍ରାଣକର୍ତ୍ତା । ତାଙ୍କୁ ଥରେ ଯିଏ ଦର୍ଶନ ସୁଯୋଗ ପାଇଛି ସେ କେବଳ ତାଙ୍କ ରଥଯାତ୍ରା ରଥ ଉପରେ ତାଙ୍କୁ ଦର୍ଶନ କରିନାହିଁ ବର୍ଷର ବିଭିନ୍ନ ସମୟରେ ଜଗନ୍ନାଥଙ୍କୁ ଅପଲକ ନେତ୍ରରେ ଦର୍ଶନ ପାଇଁ ଧାଇଁ ଆସିଛି ଏବଂ ଜଗନ୍ନାଥଙ୍କ ଚକାଆଖିରେ ଚକ୍ଷୁ ମିଳାଇ ଦେଇ ସେ ଅପାର ଆନନ୍ଦ ଓ ଶାନ୍ତି ପାଇଛି । ଜୀବନର ସମସ୍ତ ସାଂସାରିକ ଦୁଃଖ ଭୁଲିଯାଇଛି । ବିଶ୍ୱର କୌଣସି ଧର୍ମଶାସ୍ତ୍ରରେ ଜଗନ୍ନାଥଙ୍କ ଭଳି ପ୍ରତ୍ୟକ୍ଷ ଦେବତା ସଂଧାନ ଅଦ୍ୟାପି ମିଳିନାହିଁ । କାଞ୍ଚି ଯୁଦ୍ଧରେ ପୁରୁଷୋତ୍ତମ ଦେବଙ୍କ ପରାଜୟ ହେଲା । ସେ କାଞ୍ଚିଯୁଦ୍ଧ ପରାଜୟ ଦୁଃଖ ଓ ଅପମାନରେ ଭାଙ୍ଗି ପଡିଲେ ନାହିଁ । ପ୍ରଭୁ ଜଗନ୍ନାଥଙ୍କୁ ଗୁହାରି କଲେ - ହେ ଦେବ ଦେବ ଜଗନ୍ନାଥ ! କାଞ୍ଚିଯୁଦ୍ଧ ପରାଜୟ ଓଡିଆ ରାଜା କି ଓଡିଶା ଦେଶର ପରାଜୟ ନୁହେଁ ସମଗ୍ର ଜଗନ୍ନାଥ ଦେଶ ଓ ଜଗତରନାଥ ସ୍ୱୟଂ ଜଗନ୍ନାଥଙ୍କ ପ୍ରତି ଘୋର ଅପମାନ । ରାଜା ପୁରୁଷୋତ୍ତମ ଦେବ ଯୋଡହସ୍ତରେ ପୁନର୍ବାର ନିବେଦନ କଲେ- ପ୍ରଭୁ କାଞ୍ଚିଯୁଦ୍ଧ ପରାଜୟ ଅପମାନ ମୁଁ ସହ୍ୟ କରିପାରୁନାହିଁ । ମୋତେ ସାହାଯ୍ୟ କରନ୍ତୁ ପ୍ରଭୁ । ଭକ୍ତର ଆକୁଳ ନିବେଦନ ଓ କାତର ପ୍ରାର୍ଥନା ଭଗବାନଙ୍କ ପାଖରେ କେବେ ବ୍ୟର୍ଥ ହୁଏ ନାହିଁ । କାଞ୍ଚି ଯୁଦ୍ଧ ତା'ର ଅଲିଭା ଇତିହାସ । କଳାଘୋଡା ଧଳାଘୋଡା ଚଢି ସ୍ୱୟଂ ଜଗନ୍ନାଥ ପ୍ରଭୁ ବଳଦେବ କାଞ୍ଚି ଯୁଦ୍ଧରେ ଲମ୍ଫ ପ୍ରଦାନକରି ପ୍ରଥମେ କାଞ୍ଚିଗଣେଶଙ୍କୁ ପରାସ୍ତ କରିବାରୁ କାଞ୍ଚିରାଜା ଯୁଦ୍ଧରେ ପରାସ୍ତ ହେଲେ । ଠାକୁର ରାଜା ଗଜପତି ମହାରାଜ ଶ୍ରୀପୁରୁଷୋତ୍ତମ ଦେବ କାଞ୍ଚିରାଜା ନରସିଂହଦେବଙ୍କୁ ଯୁଦ୍ଧରେ ପରାସ୍ତ କରି କାଞ୍ଚିର ଇଷ୍ଟଦେବ ଗଣେଶଙ୍କୁ ସାକ୍ଷୀଗୋପାଳଙ୍କ ସହ ନେଇ ଆସୁଥିଲେ । ଭକ୍ତ ଓ ଭଗବାନଙ୍କ ମଧ୍ୟରେ ନିବିଡ ସଂପର୍କ ଗଜପତି ମହାରାଜାଙ୍କ କାଞ୍ଚି ବିଜୟ ତା'ର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ଜଗନ୍ନାଥ ମନ୍ଦିର ବେଢାର ପଶ୍ଚିମ ପାର୍ଶ୍ୱରେ ପୂର୍ବାମୁଖୀ କାଞ୍ଚିଗଣେଶ ତା'ର ପ୍ରତ୍ୟକ୍ଷ ସାକ୍ଷୀ । ସ୍ୱୟଂ ଜଗନ୍ନାଥ, ବଳଦେବ କଳାଘୋଡା, ଧଳାଘୋଡା ଚଢି କାଞ୍ଚିଯୁଦ୍ଧରେ ଯୋଗଦାନକରି ଓଡିଆଜାତିର ମାନ, ସମ୍ମାନ ଗର୍ବଗୌରବ ଅକ୍ଷୁଣ୍ଣ ରଖି କାଳକାଳକୁ ଭକ୍ତର ଭଗବାନ ପ୍ରମାଣ କରିଅଛନ୍ତି । କଳାଚିକ୍କଣ ମୁଗୁନି ପଥରରେ ଅତ୍ୟନ୍ତ କମନୀୟ ମନୋଲୋଭା ନୃତ୍ୟରତଭଙ୍ଗୀ ଠାଣୀରେ'ନାଟୁଆ ଗଣେଶ' ବିମଳାଙ୍କ ମନ୍ଦିରର ସମ୍ମୁଖ ଭାଗରେ ଦକ୍ଷିଣାଭିମୁଖୀ ମନ୍ଦିର ମଧ୍ୟରେ ପୂଜା ପାଉଛନ୍ତି । କାଞ୍ଚି ଅଭିଯାନ ସମୟରେ ଗଜପତି ପୁରୁଷୋତ୍ତମ ଦେବ ଏହି ନାଟୁଆ ଗଣେଶଙ୍କୁ ଆଣି ମଧ୍ୟ ସ୍ଥାପନ କରିଛନ୍ତି । ଜଗନ୍ନାଥ ମନ୍ଦିରରେ ବେଢା ପରିକ୍ରମା ସମୟରେ ନାଟୁଆ ଗଣେଶଙ୍କୁ ଦର୍ଶନ କରିବାକୁ ଭୁଲିଯିବା ଆଦୌ ଉଚିତ୍ ନୁହେଁ । କାରଣ ସମସ୍ତ ଭକ୍ତଙ୍କ ତାଲିକା ସେ ରଖନ୍ତି ଓ ଜଗନ୍ନାଥଙ୍କୁ ରାତ୍ର ଦରବାରରେ ଉପସ୍ଥାପନ କରିଥାନ୍ତି । କାଞ୍ଚି ଯୁଦ୍ଧରେ ଅନ୍ୟତମ ଯୋଦ୍ଧା ରାଜା ପୁରୁଷୋତ୍ତମ ଦେବଙ୍କ ମାମୁ କେନ୍ଦୁଝରର ରାଜା ଗୋବିନ୍ଦ ଭଞ୍ଜଦେବ ସାଥିରେ ନେଇଯାଇଥିବା ତାରିଣୀ ଆଜି ଘଟଗାଁ ତାରିଣୀ କାଞ୍ଚି ବିଜୟର ଅନ୍ୟତମ ସ୍ମାରକୀ ବହନ କରେ । ଏଣୁ ଜଗନ୍ନାଥ ହେଉଛନ୍ତି- ଯୁଗେ ଯୁଗେ ଭକ୍ତର ଭଗବାନ । ଭକ୍ତର ଦୁର୍ଦ୍ଦିନରେ ସେପରି ତ୍ରାଣକର୍ତ୍ତା, ଭକ୍ତର ଆନନ୍ଦ ପାଇଁ ତାଙ୍କର ବିଶ୍ୱବନ୍ଦିତ ଶ୍ରୀଜଗନ୍ନାଥଙ୍କ ପୁରୀ ରଥଯାତ୍ରା ଏବଂ ସଭିଙ୍କୁ ସଦାବେଳେ ମୁକ୍ତ ଦର୍ଶନ ପାଇଁ ମନ୍ଦିର ଦ୍ୱାରଦେଶରେ ସେ ପତିତପାବନ ରୂପେ ବିଦ୍ୟମାନ, ଯାହା ପୃଥିବୀର କୋଟିକୋଟି ଜନମାନସକୁ ଆନ୍ଦୋଳିତ କରି ପୁରୀ ଜଗନ୍ନାଥ ଧାମକୁ ପ୍ରତିଦିନ ସ୍ୱତଃ ଟାଣିଆଣୁଛି ।

ପ୍ରଭୁ ଜଗନ୍ନାଥ ହେଉଛନ୍ତି - କଳିଯୁଗର ଦେବତା । ସେହିପରି ଦ୍ୱାରିକାନାଥ-ଦ୍ୱାପର ଯୁଗ, ବଦ୍ରିନାଥ -ସତ୍ୟ ଯୁଗ, ରାମନାଥ-ତ୍ରେତୟା ଯୁଗର ଦେବତା ଅଟନ୍ତି । ଏଣୁ କଳିଯୁଗରେ ୪ ଧାମ ମଧ୍ୟରେ ଜଗନ୍ନାଥ ଧାମ ପ୍ରସିଦ୍ଧ । ଏହି ଧାମର ମହିମା ସୁଦୂରପ୍ରସାରୀ ଏବଂ ଅବର୍ଣ୍ଣନୀୟ । ପ୍ରଭୁ ଜଗନ୍ନାଥଙ୍କର ଅପାର ମହିମାରୁ ଆଜି ଭାରତ କାହିଁକି ପୃଥିବୀର ଅନେକ ସ୍ଥାନରେ ଜଗନ୍ନାଥ ମନ୍ଦିରମାନ ଗଢିଉଠିଛି । କିନ୍ତୁ ଓଡିଶାର ପୁରୀରେ ଶ୍ରୀମନ୍ଦିରଏକମାତ୍ର । ସେହିପରି ପୃଥିବୀର ଚାରିଆଡେ ଜଗନ୍ନାଥ ମୂର୍ତ୍ତି ପୂଜାପାଉଛନ୍ତି କିନ୍ତୁ ଶ୍ରୀକ୍ଷେତ୍ର ପୁରୀରେ ପ୍ରଭୁ ଜଗନ୍ନାଥଙ୍କର ତୁଳନା ନାହିଁ - ସେ ଅଦ୍ୱିତୀୟ ଓ ଅସାଧାରଣ । ଦେଶବିଦେଶରେ ଯେତେ କାରିଗରମାନେ ପୁରୀ ବା ପୁରୁଷୋତ୍ତମ କ୍ଷେତ୍ର ଜଗନ୍ନାଥଙ୍କ ପରି ଅବିକଳ ମୂର୍ତ୍ତି ଏ

ପର୍ଯ୍ୟନ୍ତ ଗଢ଼ିପାରି ନାହାନ୍ତି । ପ୍ରଭୁ ଜଗନ୍ନାଥ ଜଗତର ନାଥ । ଭକ୍ତର ମନୋବାଞ୍ଛା ପୂର୍ଣ୍ଣ କରିବା ପାଇଁ ଆଷାଢ଼ ମାସ ଶୁକ୍ଳପକ୍ଷ ୨ୟା ତିଥିରେ ସାଥିରେ ଭଉଣୀ ସୁଭଦ୍ରାଙ୍କୁ ଧରି ଚତୁର୍ଦ୍ଧାମୂର୍ତ୍ତି ରଥଯାତ୍ରା କରିଥାନ୍ତି । ସବୁଠାରେ ଦେଖାଯାଏ ଭକ୍ତ ଭଗବାନଙ୍କ ଦର୍ଶନ ପାଇବା ନିମନ୍ତେ ଭଗବାନଙ୍କ ନିକଟକୁ ଧାଇଁ ଆସେ କିନ୍ତୁ ଏଠାରେ ସ୍ୱୟଂ ଜଗନ୍ନାଥ ରତ୍ନସିଂହାସନରୁ ଓହ୍ଲାଇ ଆସି ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ କୋଟିକୋଟି ଭକ୍ତଙ୍କୁ ତାଙ୍କ ବଡଦାଣ୍ଡରେ ଦର୍ଶନ ଦେଇ ରଥେତୁ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନ ଲଭ୍ୟତେ । ରଥ ଉପରେ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କଲେ ସଂସାର ଦୁଃଖ ସାଗରରେ ପୁନର୍ଜନ୍ମ ନପାଇ ମୋକ୍ଷଲାଭ ହୁଏ । ଗୁଣ୍ଡିଚା ଯାତ୍ରାରେ ଦର୍ଶନକଲେ ସମସ୍ତ ପାପରୁ ମୁକ୍ତିଲାଭକରି ବୈକୁଣ୍ଠ ପ୍ରାପ୍ତି ହୁଏ । ଶ୍ରୀଗୁଣ୍ଡିଚା ଯାତ୍ରା ଦିନ ବଳଭଦ୍ର ତାଳଧ୍ୱଜ, ଦେବୀ ସୁଭଦ୍ରା ସୁଦର୍ଶନଙ୍କ ସହ ଦେବଦଳନ ଏବଂ ଶ୍ରୀଜଗନ୍ନାଥ ନନ୍ଦିଘୋଷ ରଥରେ ବିଜେ ହୋଇ ଗୁଣ୍ଡିଚା ମନ୍ଦିରକୁ ଯାଆନ୍ତି । ସେଠାରେ ଭକ୍ତମାନଙ୍କୁ ଦର୍ଶନ ଦେଇ ଶ୍ରୀମନ୍ଦିର ଅଭିମୁଖେ ବାହୁଡାଯାତ୍ରା କରିଥାନ୍ତି । ଏଭଳି ପତିତପାବନ ଯାତ୍ରାକୁ କୁତ୍ରାପି ଦୃଷ୍ଟିଗୋଚର ହୁଏ ନାହିଁ । ଯେଉଁଠି ଭକ୍ତ ଭଗବାନ ଏକାକାର ହୋଇଯାନ୍ତି । ଜଗନ୍ନାଥଙ୍କ ଘୋଷଯାତ୍ରା କଥା ଯିଏ ଶୁଣିଛି, ସେ ସ୍ୱନୟନରେ ଦର୍ଶନ ପାଇଁ ଆତୁରରେ ବଡଦାଣ୍ଡକୁ ଧାଇଁ ଆସିଛି । ଯେଉଁମାନେ ପୁରୀ ରଥଯାତ୍ରା ଦେଖିଛନ୍ତି, ସେମାନେ ହିଁ ବୁଝିଛନ୍ତି – ପ୍ରଭୁ ଜଗନ୍ନାଥ ହେଉଛନ୍ତି ଯଥାର୍ଥରେ ଜଗତନାଥ ଜଗନ୍ନାଥ । ଜଗନ୍ନାଥଙ୍କ ରଥଯାତ୍ରା ଅତୀବ ହୃଦୟସ୍ପର୍ଶୀ । ଶ୍ରୀଜଗନ୍ନାଥ ତାଙ୍କର ବିରାଟ ମହନୀୟ ହୃଦୟରେ ଜାତି, ଅଜାତି, ହିନ୍ଦୁ, ମୁସଲମାନ, ବୌଦ୍ଧ, ଖ୍ରୀଷ୍ଟିୟାନ ସଭିଙ୍କୁ ସ୍ଥାନ ଦେଇଛନ୍ତି । ସେ କେବଳ ଦାସିଆ ବାଉରୀ ହାତର ନଡିଆ ନେଇନାହାନ୍ତି, ମୁସଲମାନ ଭକ୍ତ ସାଲବେଗର ଆକୁଳ ପ୍ରାର୍ଥନା ଶୁଣି ଭକ୍ତ ପୁରୀରେ ପହଞ୍ଚିବା ପର୍ଯ୍ୟନ୍ତ ବଳଗଣ୍ଡିଠାରେ ତାଙ୍କ ରଥ ଅପେକ୍ଷା କରିଛି । ବଂଧୁ ମହାନ୍ତିର କ୍ଷୁଧା ନିବାରଣ ପାଇଁ ନିଶାରାତିରେ ସୁନାଥାଳିରେ ଅମୃତ ଭୋଜନ ଅଜାଡି ଦେଇଛନ୍ତି । ଶ୍ରୀଜଗନ୍ନାଥ କେବଳ ବ୍ୟକ୍ତିର ଠାକୁର ନୁହଁନ୍ତି – ସେ ହେଉଛନ୍ତି – କୋଟିକୋଟି ଜନତାର ଠାକୁର । ତାଙ୍କୁ ଯିଏ ଯେପରି ଭଜିଛି ସିଏ ସେପରି ପାଇଛି ।

ଶ୍ରୀଜଗନ୍ନାଥ, ତାଙ୍କର ରଥଯାତ୍ରା, ବଡଦାଣ୍ଡ, ବଡଦେଉଳ, ଆନନ୍ଦବଜାର, ମହାପ୍ରସାଦ, ମନ୍ଦିରର ଘଣ୍ଟି. ଘଣ୍ଟା କାହାଳୀ ଶଙ୍ଖ ସର୍ବୋପରି ଜଗନ୍ନାଥ ଧର୍ମ ଭକ୍ତ, ଦର୍ଶକ, ଭାବୁକଙ୍କୁ ତନ୍ମୟ କରିଦିଏ । ସେଥିପାଇଁ ଆଜି ଜଗନ୍ନାଥ ଏବଂ ଜଗନ୍ନାଥ ଧର୍ମ ଓଡିଶା ମାଟିରେ ସୀମିତ ହୋଇ ରହିନାହିଁ । ଜଗନ୍ନାଥ ଧର୍ମରେ ଅନୁପ୍ରାଣିତ ହୋଇ ସୁଦୂର ଆମେରିକା, ଇଟାଲି, ଇଂଲଣ୍ଡ, ଅଷ୍ଟ୍ରେଲିଆ, ଦକ୍ଷିଣଆଫ୍ରିକା ଓ ଋଷିଆର ମସ୍କୋ ସହରରେ ଜଗନ୍ନାଥ ମନ୍ଦିର ନିର୍ମାଣ ଓ ରଥଯାତ୍ରା ଆଗେଇ ଚାଲିଛି । ଯାହାକି ପୁରୀ ଦାରୁଦେବତା ସ୍ୱୟଂ ଜଗନ୍ନାଥଙ୍କୁ ସାରା ପୃଥିବୀରେ ସର୍ବଶ୍ରେଷ୍ଠ ଦେବତା ରୂପେ ମାନ୍ୟତା ପ୍ରଦାନ କରିଅଛି । ଫଳତଃ ପ୍ରାଚ୍ୟ ପାଶ୍ଚାତ୍ୟର ଅସଂଖ୍ୟ ଅଶାନ୍ତ ଜନଜୀବନକୁ ଚୁମ୍ବକ ସଦୃଶ ବଡଦାଣ୍ଡକୁ ଟାଣି ଆଣିଛି । ଧନଧାନ୍ୟ ପ୍ରାଚୁର୍ଯ୍ୟରେ ଭରା ଇଂଲଣ୍ଡ ଆମେରିକା ଶ୍ୱେତାଙ୍ଗ ଶ୍ୱେତାଙ୍ଗିନୀମାନେ ଶରୀରକୁ ଗେରୁଆ ବସ୍ତ୍ରରେ ଆଚ୍ଛାଦିତ କରି ବେକରେ ରୁଦ୍ରାକ୍ଷମାଳା, ହାତରେ ତୁଳସୀ ଜପାମାଳି ଧରି ହରେକୃଷ୍ଣ ଗାଇ ଗାଇ ବଡଦାଣ୍ଡରେ ପତିତପାବନଙ୍କ ଆଗରେ ତନ୍ମୟ ହୋଇ ଉଦଣ୍ଡ କୀର୍ତ୍ତନ କରି ନାଚିନାଚି ଆଜି ଶାନ୍ତି ପାଉଛନ୍ତି । ଭକ୍ତ ଜଗନ୍ନାଥଙ୍କ ନିକଟରେ ଅନ୍ତରର ଭକ୍ତି ନିବେଦନ କରି କହେ –

ମୁଁ ଜଣେ ପତିତ, ସଂସାର ରୂପକ ଭବ ସାଗରରେ ପଡି କଷ୍ଟପାଉଛି । ହେ ପୁଣ୍ଡରୀକାକ୍ଷ ! ହେ ଜଗନ୍ନାଥ ! ଆପଣ ଚାହିଁଲେ ଏ ଭବ ସାଗରରୁ ମୋତେ ଉଦ୍ଧାର କରି କୂଳରେ ଲଗାଇ ପାରିବେ ।

**ସହାୟକ ଗ୍ରନ୍ଥ**

ଶ୍ରୀସିଦ୍ଧ ବଳଦେବ ଜୀଉ
ସଖୀବଟ
ରଥଯାତ୍ରା ପୁରୀ
ଶ୍ରୀମନ୍ଦିର ସମାଚାର
ଦାରୁଦେବତା
ଅନ୍ୟାନ୍ୟ ଗ୍ରନ୍ଥସମୂହ

---

କେନ୍ଦ୍ରାପଡା ସହର, (ଇଚ୍ଛାପୁର)
ଶୈଳନିବାସ

# ସ୍ୱାଭିମାନର ପ୍ରତୀକ ବିଜୁ ପଟ୍ଟନାୟକ

**ନୃସିଂହ ଚରଣ ସାହୁ**

ସ୍ୱାଭିମାନର ପ୍ରତୀକ, କଳିଙ୍ଗ ବୀର, ସାହସିକ ବ୍ୟକ୍ତିତ୍ୱ, ପ୍ରବାଦପୁରୁଷ, ଦ୍ୱିତୀୟ ଖାରବେଳ, ଦୁର୍ଦ୍ଧର୍ଷ ସ୍ୱାଧୀନତା ସଂଗ୍ରାମୀ, ନିର୍ଭୀକ, ସ୍ୱାଧୀନଚେତା, ଉଦାର ହୃଦୟ ଏହିପରି ଯେତେ ଉପାଧି ତାଙ୍କ ନାମ ପୂର୍ବରୁ ଲଗାଇଲେ ବି ନିଅଣ୍ଟ ହେବ । ଓଡ଼ିଶାର ପ୍ରାକୃତିକ ସମ୍ପଦ ଓ ଜନ ସମ୍ବଳକୁ ନେଇ ଯେଉଁ ବ୍ୟକ୍ତି ଆରମ୍ଭ କରିଥିଲେ ଆମ ରାଜ୍ୟରେ ଶିଳ୍ପାୟନ, କଳ କାରଖାନା ଓ ବନ୍ଦର, ଯାହାଙ୍କ ବ୍ୟକ୍ତିତ୍ୱକୁ ବାଦ୍ ଦେଇ ଆଧୁନିକ ଓଡ଼ିଶାର ଇତିହାସ ଲେଖାଯାଇ ପାରେନା, ସେ ହେଉଛନ୍ତି ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ତଥା ପୂର୍ବତନ କେନ୍ଦ୍ର କ୍ୟାବିନେଟ୍ ମନ୍ତ୍ରୀ ସ୍ୱର୍ଗତ ବିଜୁ ପଟ୍ଟନାୟକ ।



ବିଜୁବାବୁଙ୍କ ଜନ୍ମ କଟକ ସହରର ତୁଳସୀପୁରସ୍ଥିତ 'ଆନନ୍ଦ ଭବନରେ' । ତାଙ୍କ ପିତା ଥିଲେ ବିଶିଷ୍ଟ ଜାତୀୟବାଦୀ ନେତା ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଓ ମାଆ ଆଶାଲତା ଦେବୀ । ୧୯୧୬ ମସିହା ମାର୍ଚ୍ଚ ୫ ତାରିଖ, ପବିତ୍ର ଫଗୁ ଦଶମୀ ତିଥିରେ ସେ ଜନ୍ମଲାଭ କରିଥିଲେ । ୧୯୨୩ ମସିହା ବେଳକୁ ସେ ୭ ବର୍ଷର ଶିଶୁ ଥିଲାବେଳେ ତାଙ୍କର ଆପେଣ୍ଡିକ୍ସ ଫାଟିଯିବାରୁ ତାଙ୍କ ଜୀବନ ସଙ୍କଟାପନ୍ନ ହୋଇଯାଇଥିଲା । ଭବିଷ୍ୟତରେ ଲକ୍ଷ ଲକ୍ଷ ଲୋକଙ୍କ ପାଇଁ ଯେ ଦିଗ୍‌ଦର୍ଶକ, ତ୍ରାଣକର୍ତ୍ତା ହେବେ, ସେ ଏତେ ଶୀଘ୍ର ପିଲାଦିନୁ ଚାଲିଯିବା ଈଶ୍ୱରଙ୍କର ଇଛା ନଥିଲା । ସେତେବେଳେ ଡାକ୍ତରଙ୍କ ଅଦମ୍ୟ ଚେଷ୍ଟାରେ ସେ ବଞ୍ଚିଗଲେ, କିନ୍ତୁ ଜଣାପଡ଼ିଗଲା, ଏ ପିଲାଦିନେ 'ବଡ଼ଲୋକ' ହେବ ।

୧୯୨୬ ମସିହାରେ ମହାତ୍ମା ଗାନ୍ଧୀ କଟକର 'ସ୍ୱରାଜ ଆଶ୍ରମ'କୁ ଆସିଥିଲେ । ତାଙ୍କ ପାଖକୁ ଯିବାକୁ କାହାରିକୁ ଛାଡୁନଥିଲେ ପୋଲିସବାଲା । ବାରଣ ସତ୍ତ୍ୱେ ୧୧ ବର୍ଷର ବାଳକ 'ବିଜୁ' ସାହସ କରି ଗାନ୍ଧିଜୀଙ୍କୁ ଦେଖିବାକୁ ପଶି ଯାଇଥିଲେ। ଅବଶ୍ୟ ସେଥିପାଇଁ ଗୋରା ପୋଲିସର ଲାଠିମାଡ଼ରେ ସେ ଆହତ ହୋଇଥିଲେ ।

ପ୍ରାଥମିକି ଶିକ୍ଷା ପରେ ବିଜୁ ପଟ୍ଟନାୟକ ମିଶନ ସ୍କୁଲ୍‌ରେ ପାଠ ପଢୁଥିଲେ । ପରେ ୧୯୨୭ ମସିହାରେ ରେଭେନ୍‌ସା କଲିଜିଏଟ ସ୍କୁଲରେ ନାମ ଲେଖାଇ ମାଟ୍ରିକ ପାସ୍ କଲେ । ରେଭେନ୍‌ସା କଲେଜରେ ଆଇ.ଏସ୍‌ସି. ପଢୁଥିବା ବେଳେ ୧୯୩୨ ମସିହାରେ ସେ ଏକ

ଦୁଃସାହସିକ ପଦକ୍ଷେପ ନେଇ କଟକରୁ ପେଶୱାର ପର୍ଯ୍ୟନ୍ତ ଦୁଇଜଣ ସାଥୀଙ୍କୁ ନେଇ ସାଇକେଲରେ ଯାତ୍ରା କରିଥିଲେ । ବିଜୁ ପଟ୍ଟନାୟକ ରେଭେନ୍‌ସାରେ ପଢ଼ିବା ବେଳେ କେତେଥର ସାଇକେଲରେ କଟକରୁ ପାରଳାଖେମୁଣ୍ଡି ମଧ୍ୟ ଯାଇଥିଲେ ।

ଉଡ଼ାଜାହାଜ ଚାଳନା ତାଙ୍କ ଜୀବନର ସ୍ୱପ୍ନ ଥିଲା । ବି.ଏସ୍‌ସି. ପଢୁଥିବାବେଳେ ନିଜର ଶାରୀରିକ ତଥା ଶିକ୍ଷାଗତ ଯୋଗ୍ୟତାର ପରାକାଷ୍ଠା ଦେଖାଇଥିଲେ । ୧୯୩୪ ମସିହାରେ ପାଇଲଟ୍ ଟ୍ରେନିଂରେ ଯୋଗଦେବା ସମ୍ପର୍କରେ ଗୋଟିଏ ରୋଚକ କଥା ଶୁଣାଯାଏ । ପାଠପଢ଼ିଲା ବେଳେ ବିଜୁ ଖୁବ୍ ଦୁଷ୍ଟ ଥିଲେ । ତାଙ୍କ ବାପା ଲକ୍ଷ୍ମୀନାରାୟଣ ପଟ୍ଟନାୟକ ପାରଳାଖେମୁଣ୍ଡିର ସୁନାମଧନ୍ୟ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଦେୱାନ ଥିଲେ । ଥରେ ସେ ଘରକୁ (କଟକ) କିଛି ଟଙ୍କା ମଗାଇ ପଠାଇଥିଲେ । ଘରୁ ତାଙ୍କ ସ୍ତ୍ରୀ ଆଶାଦେବୀ ଖବର ଦେଲେ – ''ବାବୁଙ୍କୁ କହିବ, ଏଠି ବିଜୁ ରହିଲେ ସେ ଆଉ ରହି ପାରିବେ ନାହିଁ । ହୋମ୍ ବ୍ୟାଙ୍କ୍‌ର ଟଙ୍କା ସବୁ ସେ ଟ୍ରେଜେରି ଖୋଲି ଚୋରାଇ ନେଉଛି ।''

ମହାରାଜାଙ୍କ ସମ୍ମୁଖରେ ଲକ୍ଷ୍ମୀନାରାୟଣ ବାବୁ ବସିଥିବାବେଳେ ଏ ଖବର ପାଇ ରାଗିଗଲେ ଏବଂ ବିଜୁଙ୍କୁ ତ୍ୟେଜପୁତ୍ର କରିବେ ବୋଲି କହିଲେ । ରାଜା କିନ୍ତୁ ହସିଲେ, କହିଲେ ''ଯିଏ ଟ୍ରେଜେରୀ ଖୋଲି ପାରୁଛି ତା'ର ଦିମାକ୍ କେତେ ଅନୁମାନ କର । ତାକୁ ଲଣ୍ଡନରେ ଅଟୋ ମୋବାଇଲ ଇଂଜିନିୟରିଂ ପଢ଼ାଅ । ବେଶ୍ ଭଲ କରିବ '' । ଦେୱାନ କହିଲେ – ମୋ ପାଖରେ ଏତେ ପଇସା ନାହିଁ । ଏହାପରେ ରାଜା କହିଲେ – ମୁଁ ଚଳାଇ ଦେବି । ତାକୁ ବୃତ୍ତି ମିଳିବ । ତାହା ହିଁ ହେଲା, ବିଜୁ ଲଣ୍ଡନ ଯାଇ ଅଟୋ ମୋବାଇଲ ଇଞ୍ଜିନିୟରିଂ ପଢ଼ିଲେ ପ୍ରଥମ ବର୍ଷ । ପରବର୍ଷ ଏରୋନଟିକ୍‌ସ୍ ଇଞ୍ଜିନିୟରିଂ ପଢ଼ିଲେ । (ବାଚନିକ ଇତିହାସ, ସୀତାକାନ୍ତ ରାଜଗୁରୁ ତା ୨୦.୦୭.୨୦୦୬)

ଟ୍ରେନିଂ ଶେଷ ପରେ, ଇଣ୍ଡିଆନ ନ୍ୟାସନାଲ ଏୟାରୱେଜ୍‌ରେ ବିଜୁବାବୁ ପାଇଲଟ୍ ରୁପେ ଯୋଗ ଦେଲେ ୧୯୩୬ ମସିହାରେ ।

ଏହାପରେ ୧୯୩୮ ମସିହାରେ ୨୩ ବର୍ଷ ବୟସରେ, ଏକ ପଞ୍ଜାବୀ ପରିବାରର ଝିଅ ଜ୍ଞାନ ଦେବୀଙ୍କୁ ବିବାହ କଲେ ବିଜୁବାବୁ । ଦୁଇପୁଅ ପ୍ରେମ ଓ ନବୀନ ଏବଂ ଏକମାତ୍ର ଝିଅ ଗୀତା ପରେ ପରେ ଜନ୍ମ ନେଲେ ।

୧୯୪୦ ମସିହା ବେଳକୁ ଭାରତରେ ସ୍ୱାଧୀନତା ଆନ୍ଦୋଳନ ଜୋରସୋର୍‌ରେ ଚାଲୁଥାଏ । ବ୍ରିଟିଶ ସରକାରଙ୍କୁ ଦେଶରୁ ତଡ଼ିବା ପାଇଁ ଆନ୍ଦୋଳନ କରି ଗାନ୍ଧିଜୀ, ପଣ୍ଡିତ ଜବାହରଲାଲ ନେହେରୁ, ସର୍ଦ୍ଦାର ପଟେଲ ପ୍ରଭୃତି ଜାତୀୟ ସ୍ତରର ନେତାମାନେ ଗିରଫ ହୋଇ ଜେଲ୍‌ରେ । ବିଜୁବାବୁ ଏତିକିବେଳେ, ବ୍ରିଟିଶ ସରକାରଙ୍କ ପାଖରେ ପାଇଲଟ୍ ଚାକିରି କରିଥାନ୍ତି । କିନ୍ତୁ ବିଜୁ ଥିଲେ ଦେଶପ୍ରାଣ, ସ୍ୱାଧୀନଚେତା ।

ଇଣ୍ଡିଆନ ନ୍ୟାସନାଲ ଏୟାରୱେଜ୍‌ର ପାଇଲଟ୍ ତଥା ଭାରତର ବଡ଼ଲାଟ୍‌ଙ୍କ ପାଇଲଟ୍ ଭାବରେ ବିଜୁବାବୁ କାମ କରୁଥିଲେ । ଭାରତକୁ ସ୍ୱାଧୀନତା ନଦେବା ପାଇଁ ଇଂରେଜମାନଙ୍କ କୂଟକପଟ ସବୁ ସେ ଜାଣି ପାରୁଥିଲେ । କୌଶଳକ୍ରମେ ସରକାରଙ୍କ ଗୁପ୍ତ କାର୍ଯ୍ୟକ୍ରମକୁ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଜଣାଇ, ସେମାନଙ୍କୁ ସେ ସାବଧାନ କରାଇ ଦେଇଥିଲେ ଏବଂ ପ୍ରତିକାରର ବାଟ ବିଷୟରେ ମଧ୍ୟ ପରାମର୍ଶ ଦେଉଥିଲେ । ବିଜୁବାବୁଙ୍କ ବ୍ରିଟିଶ ସରକାର ବିରୋଧୀ ଏହି ଗୁପ୍ତ କାରବାର ସମ୍ପର୍କରେ ଜାଣିପାରି ପୋଲିସ ତାଙ୍କୁ ଦିଲ୍ଲୀଠାରେ ଗିରଫ କଲେ । କଥା ଆଦାୟ କରିବା ପାଇଁ ଇଂରେଜ ପୋଲିସ ତାଙ୍କ ଉପରେ ଅକଥନୀୟ ଅତ୍ୟାଚାର କରିଥିଲେ। ମାତ୍ର ସେ କୌଣସି କଥା ପ୍ରକାଶ ନକରିବାରୁ ତାଙ୍କୁ ଜେଲକୁ ପଠାଇଦେଲେ। ବିପ୍ଳବୀ ନେତା ଜୟପ୍ରକାଶ ନାରାୟଣ, ଅରୁଣା ଆସଫ ଅଲ୍ଲୀ, ରାମ ମନୋହର ଲୋହିଆ ଓ ଅଚ୍ୟୁତ ପଟବର୍ଦ୍ଧନ ପ୍ରଭୃତିଙ୍କୁ ସେ ସରକାରୀ ବିମାନରେ ନେଇଯାଇଥିଲେ ବୋଲି ତାଙ୍କ ନାମରେ ବିଭିନ୍ନ ଦଫା ଲଗାଇ ତାଙ୍କୁ ୨ ବର୍ଷ ୮ ମାସ ଜେଲ୍ ଦଣ୍ଡ ଆଦେଶ ଦେବା ସହ ଚାକିରିରୁ ବହିଷ୍କାର କରାଗଲା ।

ସ୍ୱାଧୀନଚେତା ଶ୍ରୀ ପଟ୍ଟନାୟକ ପାଇଲଟ୍ ଚାକିରି ଛାଡ଼ି ୧୯୪୪ ରେ ଆରମ୍ଭ କଲେ, ନିଜସ୍ୱ ଏକ ବ୍ୟବସାୟ କମ୍ପାନୀ, ଯାହାର ନାମ ଥିଲା 'ବିଜୁ ପଟ୍ଟନାୟକ ଆଣ୍ଡ୍ କମ୍ପାନୀ' । ଏଣିକି ସେ ସ୍ୱାଧୀନ । ସ୍ୱଦେଶୀ ଆନ୍ଦୋଳନରେ ଯୋଗଦେଇ ପୁନର୍ବାର ଗୋରା ପୋଲିସ ଦ୍ୱାରା ଗିରଫ ହେଲେ । କିଛିଦିନ ପରେ ପ୍ୟାରୋଲରେ ମୁକ୍ତ ହେଲେ । ସେ ଜାତୀୟ କଂଗ୍ରେସର ଜଣେ ଜଣାଶୁଣା ନେତା ଓ ଓଡ଼ିଶା ରାଜ୍ୟରେ କଂଗ୍ରେସର ସ୍ୱାଧୀନତା ଆନ୍ଦୋଳନର ଜଣେ ଆଗଧାଡ଼ିର ସୈନିକ ରୂପେ ପରିଚିତ ହେଲେ ।

ସ୍ୱାଧୀନତାର ପ୍ରାକ୍‌କାଳ,୧୯୪୬ ମସିହାରେ ଓଡ଼ିଶାରେ ମହତାବ ବାବୁ ନିର୍ବାଚନର ନେତୃତ୍ୱ ନେଲେ । ବ୍ୟବସ୍ଥାପକ ସଭାର ସଭ୍ୟ ପଦ ପାଇଁ ତାଙ୍କୁ ପ୍ରାର୍ଥୀ ଭାବରେ ମନୋନୀତ କରାଗଲା ଏବଂ ସେ ଜୟଯୁକ୍ତ ହୋଇଥିଲେ କଂଗ୍ରେସ ଦଳରୁ ।

**ଇଣ୍ଡୋନେସିଆର ମୁକ୍ତି ସଂଗ୍ରାମ**

ଚାଳିଶ ଦଶକରେ ସ୍ୱାଧୀନତା ପାଇଁ ଇଣ୍ଡୋନେସିଆରେ ବିଦେଶୀ ଡଚ୍ ଶାସନ ବିରୁଦ୍ଧରେ ସ୍ଥାନୀୟ ନେତାମାନଙ୍କର ଆନ୍ଦୋଳନ ଚାଲିଥିଲା । ଏତିକିବେଳେ ଏସିଆର ବିଭିନ୍ନ ଦେଶର ନେତାମାନଙ୍କର ଦିଲ୍ଲୀଠାରେ ଗୋଟିଏ ବୈଠକ ବସିଥିଲା । ଡଚ୍‌ମାନେ ଇଣ୍ଡୋନେସିଆର ପ୍ରକୃତ ନେତାମାନଙ୍କୁ ଏହି ବୈଠକରେ ଯୋଗଦେବାକୁ ଅନୁମତି ଦେଲେନାହିଁ । ସେ ଦେଶର ପରିସ୍ଥିତି ସମ୍ପର୍କରେ ତଥ୍ୟ ସଂଗ୍ରହ ପାଇଁ ପଣ୍ଡିତ ଜବାହରଲାଲ ନେହେରୁ ବିଜୁବାବୁଙ୍କୁ ଦାୟିତ୍ୱ ଦେଇଥିଲେ । । ଡ଼ଚ୍‌ମାନଙ୍କ ଅଧୀନସ୍ଥ ଦେଶର ବିମାନଘାଟୀରେ ତାଙ୍କ ବିମାନ ଓହ୍ଲାଇଲେ, ଯେକୌଣସି ମୁହୂର୍ତ୍ତରେ ଗୁଳିକରି ବିମାନଟିକୁ ଖସାଇ ଦେବାର ଭୟ । ତଥାପି ସୁଚତୁର ପାଇଲଟ୍ ଶ୍ରୀ ପଟ୍ଟନାୟକ ନିଜର ସିଙ୍ଗଲ ଇଞ୍ଜିନ ବିଶିଷ୍ଟ ପୁରୁଣା ଡ଼ାକୋଟା ବିମାନକୁ ନେଇ ସେଠାରେ ପହଞ୍ଚିଥିଲେ । ଏହି ପୁରୁଣା ବିମାନଟି ସେ ନିଜେ ଖର୍ଚ୍ଚ କରିଥିଲେ ଓ ଆବଶ୍ୟକୀୟ ଯନ୍ତ୍ରାଂଶ କିଣି ବିମାନଟିକୁ ଚଳନକ୍ଷମ କରିପାରିଥିଲେ । ଇଣ୍ଡୋନେସିଆ ଯାତ୍ରାରେ ପ୍ରତି ପଦରେ ଜୀବନ ପ୍ରତି ବିପଦର ଆଶଙ୍କା । ତେଣୁ କାହାରିକୁ ସାଥୀରେ ସାମିଲ କରିବା ପାଇଁ ସେ ଚାହୁଁନଥିଲେ । କିନ୍ତୁ ତାଙ୍କର ପତ୍ନୀ ଜ୍ଞାନ ପଟ୍ଟନାୟକ ଜିଦ୍ କରି ତାଙ୍କ ସାଙ୍ଗରେ ଯାଇଥିଲେ । ଛାଡ଼ିଯାଇଥିଲେ ୧୪ ଦିନର ଶିଶୁପୁତ୍ର ପ୍ରେମକୁ ଆୟା ଦାୟିତ୍ୱରେ ।

୧୯୪୨ ମସିହା ଜୁଲାଇ ମାସ ୨୨ ତାରିଖ ଦିନ ବିଜୁବାବୁ ଡ଼ାକୋଟା ବିମାନରେ ଜାକର୍ତ୍ତା ଯାତ୍ରା କଲେ । ବାଟାଭିଆ ଆକାଶରେ ଚାରିପାଖରୁ ଘେରି ଗଲେ ଡ଼ଚ୍ ସରକାରଙ୍କ ବିମାନ, ଢ଼ୋ ଢ଼ୋ ଗୁଳି ଶବ୍ଦରେ ଚାରିଆଡ଼ ପ୍ରକମ୍ପିତ । ବିଜୁବାବୁ ତାଙ୍କ ପତ୍ନୀଙ୍କ ମୁହଁକୁ ଚାହୁଁଥାନ୍ତି, ପତ୍ନୀ ମଧ୍ୟ ତାଙ୍କ ମୁହଁକୁ, ଜୀବନ ମରଣର ସନ୍ଧିକ୍ଷଣ, ହଠାତ୍ ସୁଦକ୍ଷ, କୁଶଳୀ ପାଇଲଟ୍ ବିଜୁବାବୁ ତାଙ୍କ ବିମାନକୁ ବହୁ ଉପରକୁ ଉଠାଇନେଇ ୪୫ ମିନିଟ୍ ପରେ ନିର୍ଦ୍ଦିଷ୍ଟ ବିମାନଘାଟୀରେ ଓହ୍ଲାଇଲେ । ଶତ୍ରୁ ଜାହାଜଗୁଡ଼ିକ ସେତେବେଳକୁ ଅପସରି ଯାଇଥାନ୍ତି ।

ସେ ବିମାନ ବନ୍ଦର ଦାୟିତ୍ୱରେ ଥିଲେ ଏୟାର ମାର୍ଶାଲ ସୁବେଦାର । ଭୀଷଣ ବର୍ଷା ହେଉଥାଏ । କୌଣସି ପ୍ରକାରେ ଏକ ଭଙ୍ଗା ଜିପ୍‌ରେ ସେ ଓଦାପଟା ହୋଇଯାଇ ସୁକର୍ଣ୍ଣଙ୍କ ପ୍ରାସାଦରେ ପହଞ୍ଚିଲେ । ସେଠାରେ କିଛି ଦିନ ରହିବା ପରେ ବିଜୁବାବୁ ବୁଝିପାରିଲେ, ସୁକର୍ଣ୍ଣ ଜଣେ ବିଜ୍ଞ, ବିଦ୍ୱାନ, ରାଷ୍ଟ୍ରନୀତିଜ୍ଞ, ଅଧିକନ୍ତୁ ସୁକର୍ଣ୍ଣ ସ୍ୱାମୀ ବିବେକାନନ୍ଦଙ୍କ ଜଣେ ବଡ଼ ଭକ୍ତ ।

ତାଙ୍କର ସେଠାରେ ଅବସ୍ଥାନ କାଳରେ ସୁକର୍ଣ୍ଣଙ୍କର ଝିଅଟିଏ ଜନ୍ମ ହେଲା । ସେତେବେଳେ ଭୀଷଣ ବର୍ଷା, ବିଜୁଳି, ଘଡ଼ଘଡ଼ି ଶବ୍ଦରେ କାନ ଅତଡ଼ା ପଡ଼ିଯାଉଥାଏ । ଏଭଳି ପାଗରେ ଜନ୍ମିତ ଝିଅଟିର ନାମ ଦେବାପାଇଁ ସୁକର୍ଣ୍ଣ ବିଜୁବାବୁଙ୍କୁ ପଚାରିଲେ, ବର୍ଷାକୁ ସଂସ୍କୃତରେ କ'ଣ କହନ୍ତି ? ବିଜୁ ବାବୁ ସଙ୍ଗେ ସଙ୍ଗେ ଉତ୍ତର ଦେଲେ 'ମେଘ' । ମୁସଲମାନ ହୋଇଥିଲେ ବି ସଂସ୍କୃତ ଭାଷା ପ୍ରତି ଆଗ୍ରହୀ ସୁକର୍ଣ୍ଣ ନବଜାତ ଶିଶୁକନ୍ୟା ନାମ ଦେଇଥିଲେ 'ମେଘାବତୀ' । ଏବେ ମେଘାବତୀ ଇଣ୍ଡୋନେସିଆ ରାଜ୍ୟର ୨ୟ ବୃହତ୍ତମ ରାଜନୈତିକ ଦଳର ଅଧ୍ୟକ୍ଷା ।

ନିରାପତ୍ତା ଦୃଷ୍ଟିରୁ ସୁକର୍ଣ୍ଣଙ୍କୁ ଭାରତକୁ ନେଇ ଆସିବାକୁ ବିଜୁବାବୁ ଇଚ୍ଛା ପ୍ରକାଶ କଲେ । କିନ୍ତୁ ସୁକର୍ଣ୍ଣ ଦେଶ ଛାଡ଼ି ଚାଲିଗଲେ, ସେଠିକାର ସଂଗଠନ ଭାଙ୍ଗିଯିବ, ସ୍ୱାଧୀନତା ସଂଗ୍ରାମୀମାନଙ୍କ ମନୋବଳ କମିଯିବ କହି, ସେ ନିଜେ ନ ଆସି, ନିଜର ବିଶ୍ୱସ୍ତ ପ୍ରଧାନମନ୍ତ୍ରୀ ଡ଼କ୍ଟର ସାହାରିୟର ଓ ଅନ୍ୟ କେତେକ ନେତାଙ୍କୁ ପଠାଇଲେ । ବାଟାଭିଆରେ ଡ଼ଚ୍ ସୈନ୍ୟମାନେ ଆକ୍ରମଣ କରି ଦେଇଥାନ୍ତି । ଠିକ୍ ରାତି ଅଧରେ ବିଜୁବାବୁ ଇଣ୍ଡୋନେସିଆର କର୍ମକର୍ତ୍ତା ଓ ଜ୍ଞାନଦେବୀଙ୍କ ସହ ଡ଼ାକୋଟା ବିମାନରେ ପୂର୍ବଦିଗକୁ ପଳାଇ ଆସି, ସକାଳୁ ସକାଳୁ ସିଙ୍ଗାପୁରରେ ପହଞ୍ଚିପାରିଲେ । ସେତେବେଳେ ରାଡ଼ାର ପ୍ରଭୃତି ଏତେ ଉନ୍ନତ ବୈଜ୍ଞାନିକ ଯନ୍ତ୍ରପାତି ନଥିବାରୁ, ଡ଼ଚ୍ ସୈନ୍ୟମାନେ ବୋକା ବନି ଯାଇଥିଲେ । ଯାହା ଫଳରେ ପରଦିନ ସମ୍ବାଦପତ୍ରରେ ଏହି ଚାଞ୍ଚଲ୍ୟକର ଖବର ପ୍ରକାଶ ପାଇଲା । ଭାରତର ବଡ ବଡ ନେତାମାନେ ବିଜୁବାବୁଙ୍କର ସାହସ, ଦକ୍ଷତା ଓ କୌଶଳର ଉଚ୍ଚ ପ୍ରଶଂସା କରିଥିଲେ।

ଏହାର କିଛିଦିନ ପରେ ସୁମାତ୍ରାରୁ ଇଣ୍ଡୋନେସିଆର ଉପରାଷ୍ଟ୍ରପତି ଡ଼କ୍ଟର ହଟ୍ଟାଙ୍କୁ କୌଶଳକ୍ରମେ ନେଇ ଆସି ପ୍ରଧାନମନ୍ତ୍ରୀ ନେହେରୁଙ୍କ ସହ ସାକ୍ଷାତ କରାଇ, ବିଜୁବାବୁ ସେ ଦେଶ ପାଇଁ କିଛି ଆର୍ଥିକ ଓ ଅସ୍ତ୍ରଶସ୍ତ୍ର ସାହାଯ୍ୟ ଦେବାର ବ୍ୟବସ୍ଥା କରିଥିଲେ । ୧୯୫୦ ମସିହାରେ ଇଣ୍ଡୋନେସିଆ ସ୍ୱାଧୀନତା ଲାଭକଲା ।

କୃତଜ୍ଞ ଇଣ୍ଡୋନେସିଆର ସ୍ୱାଧୀନ ସରକାର ବିଜୁବାବୁଙ୍କ ଅବଦାନ ପାଇଁ ତାଙ୍କୁ ଏକ ବିରାଟ ତୈଳଖଣିର ରିହାତି, ସେ ଦେଶରେ ବିଭିନ୍ନ ଶିଳ୍ପ ପ୍ରତିଷ୍ଠା ପାଇଁ ସୁବିଧା, ପାଞ୍ଚଶହ ବର୍ଗମାଇଲ ପରିମିତ ଏକ ଅତି ମୂଲ୍ୟବାନ ଜଙ୍ଗଲ ଓ ଡ଼ଚ୍ ପରିତ୍ୟକ୍ତ ଏକ ବିରାଟ ପ୍ରାସାଦ ଉପହାର ଦେବାପାଇଁ ଲିଖିତ ଚୁକ୍ତିପତ୍ର କରି ବିଜୁବାବୁଙ୍କୁ ପ୍ରଦାନ କରିଥିଲେ, ଯାହାର ମୂଲ୍ୟ ପାଞ୍ଚଶହ କୋଟି ଟଙ୍କା ହେବ ।

ସ୍ୱାଧୀନତା ପ୍ରାପ୍ତି ପରେ ଏକ ସ୍ୱାଗତ ଉତ୍ସବ ପାଳନ ଅବସରରେ ବହୁରାଷ୍ଟ୍ରର ପ୍ରତିନିଧିମାନେ ଯୋଗ ଦେଇଥିଲେ । ସୁକର୍ଣ୍ଣଙ୍କର ବିଶେଷ ନିମନ୍ତ୍ରଣକ୍ରମେ ବିଜୁବାବୁ ଓ ଜ୍ଞାନଦେବୀ ଯୋଗ ଦେଇଥିଲେ । ବିଜୁବାବୁ ପୂର୍ବରୁ ଇଣ୍ଡୋନେସିଆ ସରକାର ତାଙ୍କୁ ଉପହାର ଦେଇଥିବା ଲିଖିତ ଚୁକ୍ତିପତ୍ର ଫେରାଇ ଦେଇ ତାଙ୍କର ମିଳିତ ପାର୍ଲିଆମେଣ୍ଟରେ କହିଥିଲେ, ‘‘କଳିଙ୍ଗ ସାମ୍ରାଜ୍ୟ କାହାରି ଦାନ ଗ୍ରହଣ କରେ ନାହିଁ ।’’ ଧନ୍ୟ ବିଜୁବାବୁ ଧନ୍ୟ ତୁମ ମହତ ପଣିଆ, ଉଦାର ସ୍ୱଭାବ ଓ ସ୍ୱାଭିମାନ ।

କୃତଜ୍ଞ ଇଣ୍ଡୋନେସିଆବାସୀ ତାଙ୍କ ଡ଼ାକଟିକେଟରେ ବିଜୁବାବୁଙ୍କ ସହ ତାଙ୍କ ଡ଼ାକୋଟା ବିମାନର ଛବି ଥାଇ ଏକ ସ୍ୱତନ୍ତ୍ର ଡ଼ାକଟିକେଟ ପ୍ରଚଳନ କରିଛନ୍ତି । ୧୯୭୩ ମସିହାରେ ଏକ ଉତ୍ସବରେ ଇଣ୍ଡୋନେସିଆ ସରକାର ବିଜୁବାବୁଙ୍କୁ ‘‘ଭୂମିପୁତ୍ର’’ ଉପାଧିରେ ଭୂଷିତ କରି ଶ୍ରେଷ୍ଠ ସଂବର୍ଦ୍ଧନା ଜଣାଇଛନ୍ତି ।

୧୯୪୮ ମସିହାରେ ପାକିସ୍ଥାନ ଅଧିକୃତ କାଶ୍ମୀରରେ ନିରାପଦରେ ଭାରତୀୟ ସୈନ୍ୟମାନଙ୍କୁ ସେ ସାହସର ସହିତ ଅବତରଣ କରାଇଥିଲେ ।

୧୯୫୦ରେ ନେପାଳ ଗଣତନ୍ତ୍ର ବିରୁଦ୍ଧରେ ହୋଇଥିବା ଷଡ଼ଯନ୍ତ୍ରକୁ ଭଣ୍ଡୁର କରିବା ପାଇଁ ବିଜୁବାବୁ ନେପାଳ ରାଜାଙ୍କୁ ଅସ୍ତ୍ରଶସ୍ତ୍ର ଓ ବିଭିନ୍ନ ସାମଗ୍ରୀ ସାହାଯ୍ୟ କରିଥିଲେ ।

୧୯୬୨ ମସିହାରେ ଭାରତ-ଚୀନ୍ ଯୁଦ୍ଧବେଳେ ଭାରତୀୟ ସୈନ୍ୟମାନଙ୍କୁ ଖାଦ୍ୟ ପୁଡ଼ିଆ ଯୋଗାଇବା କାର୍ଯ୍ୟ ତୁଲାଇଥିଲେ ସୁଦକ୍ଷ ବୈମାନିକ ବିଜୁବାବୁ। ପ୍ରଧାନମନ୍ତ୍ରୀ ନେହେରୁଙ୍କ ଦ୍ୱାରା ସ୍ୱତନ୍ତ୍ର ଭାବେ ବୈଦେଶିକ ବିଭାଗର ଅତିରିକ୍ତ ଦାୟିତ୍ୱ ନେଇ ତତ୍କାଳୀନ ଆମେରିକା ରାଷ୍ଟ୍ରପତି କେନେଡ଼ିଙ୍କୁ ସେ ଉତ୍ତମ ରୂପେ ବୁଝାଇ ଭାରତ ପାଇଁ ସାହାଯ୍ୟର ପଥ ପରିଷ୍କାର କରିପାରିଥିଲେ ।

### କୋଇଲାରୁ ପେଟ୍ରୋଲ

ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ଇନ୍ଧନ ସଂକଟ ଦେଖାଦେଲା । ଜର୍ମାନ୍ କୋଇଲାରୁ ସିନ୍ଥେଟିକ୍ ତେଲ ବ୍ୟବହାର କରିବାକୁ ବାଧ ହେଲା । ଫ୍ରାନ୍ସ ଆଉ ଅନ୍ୟ ଉପାୟ ନପାଇ କୋଇଲାରୁ ତେଲ ବାହାର କରିବାକୁ

ବସିଲା । ପ୍ରଥମ ଅବସ୍ଥାରେ ପାଞ୍ଚଟନ କୋଇଲାରୁ ଏକ ଟନ୍ ତେଲ ବାହାରିଲା । ଆମେରିକା ମଧ୍ୟ ଏହି ତେଲ ଉତ୍ପାଦନ କ୍ଷେତ୍ରରେ ଆଗ୍ରହୀ ହେଲା । ଆମେରିକା ବର୍ଲିନ୍ (ଜର୍ମାନ) ଅଧିକାର କଲାପରେ ସେଠାର ବିଶେଷଜ୍ଞମାନଙ୍କୁ ଧରିଆଣି କୋଇଲାରୁ ପେଟ୍ରୋଲ ବାହାର କରିବାର କୌଶଳ ଜାଣିବାକୁ ପାଇଲା, କିନ୍ତୁ ଆମେରିକାରେ ଅଧିକ କୋଇଲା ପଥର ନଥିବାରୁ ସେ ଆଉ ସେ ଦିଗରେ ବିଶେଷ ଆଗେଇଲା ନାହିଁ ।

ଏହି ସମୟରେ ବିଜୁ ପଟ୍ଟନାୟକ କୋଇଲାରୁ ପେଟ୍ରୋଲ ବାହାର କରିବା ପାଇଁ ଯୋଜନା କଲେ । ଓଡ଼ିଶାର ୫ ଜଣ ଶିକ୍ଷିତ ତରୁଣଙ୍କୁ ଫ୍ରାନ୍ସ ପଠାଇଲେ ଏ ଦିଗରେ ଅଧ୍ୟୟନ ଓ ଗବେଷଣା କରିବାକୁ । ସେମାନେ ୨୮.୧୧.୧୯୪୮ରେ ଫ୍ରାନ୍ସରେ ପହଞ୍ଚି ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ପେଟ୍ରୋଲିୟମ୍‌ରେ ଯୋଗଦେଲେ । ମାତ୍ର ବର୍ଷକ ପରେ ଭାରତ ସରକାର ବିଜୁଙ୍କ ଫର୍ମୁଲା ଗ୍ରହଣ କଲେ ନାହିଁ । ପ୍ରୋଜେକ୍ଟ ଫେଲ ମାରିଲା । ତଥାପି ବିଜୁ ଚାହୁଁଥିଲେ କିଛି ଗୋଟେ ବଡ଼ ଜିନିଷ କରି ଦେଖାଇଦେବେ । ତାଙ୍କର କଳିଙ୍ଗ ଆଇରନ୍‌ରେ ''ଲୋ ସାଫ୍ଟ ଫର୍ମୁଲା'' ଭାରତରେ ପ୍ରଥମ ।

(ବାଚ଼ନିକ ଇତିହାସ, ପ୍ରତାପରୁଦ୍ର ପରିଜା, ୦୯.୦୭.୨୦୦୦)

କଳିଙ୍ଗ ବୀର ଖାରବେଳଙ୍କୁ ନିଜର ଆଦର୍ଶ ମନେ କରି ବିଜୁବାବୁ ଆମ ରାଜ୍ୟକୁ ଓଡ଼ିଶା ବା ଉତ୍କଳ ଅପେକ୍ଷା 'କଳିଙ୍ଗ' ନାମରେ ସମ୍ବୋଧନ କରିବାକୁ ଅଧିକ ଆନନ୍ଦିତ ହେଉଥିଲେ । ୧୯୫୧ ମସିହାରେ ଜାତିସଂଘରେ ୟୁନେସ୍କୋ ଜରିଆରେ ସେ 'କଳିଙ୍ଗ ପୁରସ୍କାର'ର ପ୍ରବର୍ତ୍ତନ କରି ସାରା ବିଶ୍ୱରେ କଳିଙ୍ଗର ସମ୍ମାନ ବୃଦ୍ଧି କରିଛନ୍ତି । ସେଥିପାଇଁ ସେ ୧ ଲକ୍ଷ ପାଉଣ୍ଡ ସ୍ଥାୟୀ ଜମା ପ୍ରଦାନ କରିଥିଲେ ।

୧୯୫୨ ମସିହା ନିର୍ବାଚନରେ ସେ ଗଂଜାମର ଭଞ୍ଜନଗର ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ଦଳର ପ୍ରାର୍ଥୀଭାବେ ବିଧାୟକ ହୋଇଆସିଲେ । ରାଜ୍ୟ କଂଗ୍ରେସର ସଂଗଠନରେ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ ଲକ୍ଷ୍ୟ କରି ୧୯୬୧ ମସିହାରେ ତାଙ୍କୁ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସଭାପତି ରୂପେ ନିର୍ବାଚିତ କରାଗଲା । ସେହିବର୍ଷ 'କଳିଙ୍ଗ ଟ୍ରଷ୍ଟ' ତରଫରୁ 'କଳିଙ୍ଗ' ନାମରେ ସେ ଏକ ଦୈନିକ ସମ୍ବାଦପତ୍ର ପ୍ରକାଶ କଲେ । ସେ ଓଡ଼ିଶାବାସୀଙ୍କୁ ଶିଳ୍ପ ବିପ୍ଳବ ମାଧ୍ୟମରେ 'ଆଧୁନିକ ସ୍ୱପ୍ନର ଓଡ଼ିଶା' ସଂପର୍କରେ ବୁଝାଇଦେଲେ । ଓଡ଼ିଶାବାସୀ ମନ୍ତ୍ରମୁଗ୍ଧ ହୋଇ ତାଙ୍କ ଭାଷଣରେ ପ୍ରଭାବିତ ହେଲେ । ନୂତନ ଆଶା, ନୂତନ ପ୍ରେରଣା ଏବଂ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କ ତାଙ୍କ ପ୍ରତି ଆସ୍ଥା ଓ ବିଶ୍ୱାସର ସୂଚନା ଦେଇ ସେ ଭୋଟରମାନଙ୍କ ମନ କିଣିନେଲେ । ୧୯୬୧ ମସିହାରେ ତାଙ୍କ ନେତୃତ୍ୱରେ ନିର୍ବାଚନରେ କଂଗ୍ରେସ ଦଳ ବିପୁଳ ସଂଖ୍ୟାରେ ବିଜୟୀ ହେଲା । ଏହା ବାସ୍ତବରେ ଥିଲା ତାଙ୍କ ବ୍ୟକ୍ତିତ୍ୱର ବିଜୟ। ସେ ଚୌଦ୍ୱାର ନିର୍ବାଚନ ମଣ୍ଡଳୀରୁ ଜୟଯୁକ୍ତ ହୋଇ ଜୁନ୍ ୨୩ ତାରିଖରେ ରାଜ୍ୟର ମୁଖ୍ୟମନ୍ତ୍ରୀ ଭାବେ ଶପଥ ନେଲେ । ଏଣିକି ସେ ଦେଶ ତଥା ନିଜ ରାଜ୍ୟର ରାଜନୀତିରେ ଭାଗ ନେଇ ଜନସାଧାରଣଙ୍କର ଉନ୍ନତି ପାଇଁ ଅନେକ କିଛି କାର୍ଯ୍ୟ କରିବାକୁ ମନସ୍ଥ କଲେ ।

ତାଙ୍କ ଶାସନ କାଳରେ ପାଠ୍ୟପୁସ୍ତକର ଜାତୀୟ କରଣ କରାଗଲା । ଓଡ଼ିଶାରେ ଶିଳ୍ପ ବିକାଶ ଲାଗି ସେ ଅନବରତ ଉଦ୍ୟମ ଚଳାଇଥିଲେ। ପ୍ରତ୍ୟେକ ପଞ୍ଚାୟତ ସମିତିରେ ଗୋଟିଏ ଗୋଟିଏ କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠା କରିଥିଲେ। ଚୌଦ୍ୱାରରେ ଓ.ଟି.ଏ.ମ୍. ଲୁଗାକଳ, ପାଇପ୍ କାରଖାନା, ବଡବିଲ୍ ଲୁହା କାରଖାନା, ସୈନିକ ସ୍କୁଲ ଓ ସୁନାବେଡାରେ ମିଗ୍ ବିମାନ କାରଖାନା ତାଙ୍କର ଗୋଟିଏ ଗୋଟିଏ ଅମ୍ଳାନ କୀର୍ତ୍ତି।

କାମରାଜ ଯୋଜନା ଅନୁଯାୟୀ ୧୯୬୩ ମସିହା ଅକ୍ଟୋବର ୨ ତାରିଖ ଦିନ ସେ ରାଜ୍ୟ ମୁଖ୍ୟମନ୍ତ୍ରୀ ପଦ ଛାଡ଼ିବାକୁ ବାଧ୍ୟ ହେଲେ । ମୁଖ୍ୟମନ୍ତ୍ରିତ୍ୱ ପରେ ସେ ରାଜ୍ୟ ଯୋଜନା ବୋର୍ଡ଼ର ଅଧ୍ୟକ୍ଷ ରହିଲେ ୧୯୬୭ ମସିହା ପର୍ଯ୍ୟନ୍ତ ।

୧୯୬୪ ମସିହାରେ ବିଜୁବାବୁଙ୍କ ଦାୟିତ୍ୱରେ ଜାତୀୟ କଂଗ୍ରେସର ଏକ ପୂର୍ଣ୍ଣାଙ୍ଗ ଅଧିବେଶନ ଭୁବନେଶ୍ୱରଠାରେ ହୋଇଥିଲା । ବୀରେନ ମିତ୍ର ମୁଖ୍ୟମନ୍ତ୍ରୀ ଥିଲେ ମଧ୍ୟ ଉନ୍ନତ ମାନର ଅଧିବେଶନର ପରିଚାଳନା, ଖାଦ୍ୟପେୟ, ଗମନାଗମନ, ଶାନ୍ତି ଶୃଙ୍ଖଳା, ସ୍ୱାସ୍ଥ୍ୟ ଓ ପରିମଳ ବ୍ୟବସ୍ଥା ଦୃଷ୍ଟିରୁ ଜାତୀୟ ସ୍ତରର ନେତାମାନେ ବିଜୁବାବୁଙ୍କୁ ଉଚ୍ଚ ପ୍ରଶଂସା କରିଥିଲେ।

୧୯୬୬ ମସିହାରେ କଳାହାଣ୍ଡିରେ ଘୋର ଦୁର୍ଭିକ୍ଷ, ଇନ୍ଦିରା ଗାନ୍ଧୀଙ୍କ କଳାହାଣ୍ଡି ପରିଦର୍ଶନ ପରେ ଓଡ଼ିଶା କଂଗ୍ରେସ ଅପ୍ରିୟ ହୋଇ ପଡିଲା । କେନ୍ଦ୍ରର ସହଯୋଗ ହରାଇଲା । ଜନସାଧାରଣଙ୍କ ମନରେ ଅଶାନ୍ତି ଦେଖାଦେଲା ।

ଦୁର୍ନୀତି ଅଭିଯୋଗରେ ୧୯୬୭ ମସିହାରେ ବିଜୁ ପଟ୍ଟନାୟକଙ୍କ ବିରୁଦ୍ଧରେ ଖାନ୍ନା କମିଶନ ବସିଲା, ମାତ୍ର ଆବଶ୍ୟକୀୟ ତଥ୍ୟ ପ୍ରମାଣ ଅଭାବରୁ ତାଙ୍କ ବିରୁଦ୍ଧରେ ଦୁର୍ନୀତି ଅଭିଯୋଗ ପ୍ରମାଣିତ ହୋଇପାରିଲା ନାହିଁ । ସ୍ୱାଭିମାନୀ ବିଜୁବାବୁ ସେହିବର୍ଷ ଜାତୀୟ କଂଗ୍ରେସ ଛାଡ଼ି, 'ଉତ୍କଳ କଂଗ୍ରେସ' ନାମରେ ଏକ ଆଞ୍ଚଳିକ ଦଳ ଗଠନ କଲେ । ନିଜେ ତାହାର ସଭାପତି ରହିଲେ ଓ ସମସ୍ତ ପରିଚାଳନା ଭାର ବହନ କଲେ । ଭାଗ୍ୟର ବିଡ଼ମ୍ବନା, ୧୯୬୭ ମସିହାରେ ଏକକାଳୀନ ୪ଟି ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ ହୋଇ ସମସ୍ତ ଆସନରୁ ପରାଜିତ ହେଲେ ବିଜୁବାବୁ ପରେ ଅବଶ୍ୟ ରାଜନଗର ନିର୍ବାଚନ ମଣ୍ଡଳୀର ଉପନିର୍ବାଚନରେ ପ୍ରାର୍ଥୀ ହୋଇ ସେ ବିଧାୟକ ହୋଇପାରିଥିଲେ । ୧୯୭୪ ମସିହାରେ ପୁନଶ୍ଚ ଉତ୍କଳ କଂଗ୍ରେସର ପ୍ରାର୍ଥୀ ଭାବେ ଜିତି ବିଧାନସଭାକୁ ଆସିଥିଲେ ।

୧୯୭୫ ମସିହାରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ଜରୁରୀ ପରିସ୍ଥିତି ଘୋଷଣାର ବିରୋଧ କରିବାରୁ ତାଙ୍କୁ ଦିଲ୍ଲୀଠାରେ ମିଶାରେ ଗିରଫ କରି ଜେଲ୍‌ରେ ରଖାଗଲା । ଜରୁରୀ ଅବସ୍ଥାର ଅବସାନପରେ ୧୯୭୭ ମସିହାରେ ଜନତା ଦଳ ଗଠନ କରି ବିଜୁବାବୁ କେନ୍ଦ୍ରାପଡ଼ା ଲୋକସଭା ଆସନରୁ ଜୟଯୁକ୍ତ ହୋଇ ମୋରାରଜୀ ଦେଶାଇଙ୍କ ମନ୍ତ୍ରିମଣ୍ଡଳରେ ଖଣି ଓ ଇସ୍ପାତ ବିଭାଗର କ୍ୟାବିନେଟ୍ ମନ୍ତ୍ରୀପଦ ଗ୍ରହଣ କରିଥିଲେ । ୧୯୭୯ ମସିହାରେ ଚରଣ ସିଂହଙ୍କ ମନ୍ତ୍ରିମଣ୍ଡଳରେ ପୁନର୍ବାର ସେହି ବିଭାଗ ଦାୟିତ୍ୱରେ ରହିଥିଲେ ବିଜୁ ପଟ୍ଟନାୟକ ।

୧୯୮୪ ସାଧାରଣ ନିର୍ବାଚନରେ କେନ୍ଦ୍ରାପଡ଼ା ଲୋକସଭା ଆସନ ଓ ୧୯୮୫ରେ ଭୁବନେଶ୍ୱର ବିଧାନ ସଭା ଆସନରୁ ଜୟଯୁକ୍ତ ହୋଇଥିଲେ ବିଜୁବାବୁ । ରାଜ୍ୟ ରାଜନୀତିରେ ରହିବାକୁ ମନସ୍ଥ କରି ସେ କେନ୍ଦ୍ରାପଡ଼ା ଲୋକସଭା ଆସନରୁ ଇସ୍ତଫା ଦେଇଥିଲେ । ରାଜ୍ୟ ରାଜନୀତିରେ ଅଧିକ ସକ୍ରିୟ ଭାଗନେବାକୁ ସେ ବିଧାନସଭାରେ ବିରୋଧୀଦଳ ନେତା ଭାବେ ନିର୍ବାଚିତ ହୋଇଥିଲେ। ୨୨.୦୩.୧୯୮୫ରୁ ୦୩.୦୩.୧୯୯୦ ପର୍ଯ୍ୟନ୍ତ ସେ ଏହି ଦାୟିତ୍ୱରେ ଥିଲେ ।

### ପୁନଶ୍ଚ ମୁଖ୍ୟମନ୍ତ୍ରୀ

୧୯୯୦ ମସିହା ତାଙ୍କ ପକ୍ଷେ ଏକ ଶୁଭଙ୍କର ବର୍ଷ ଥିଲା । ଜନତା ଦଳ ପ୍ରାର୍ଥୀ ରୂପେ ସେ ଭୁବନେଶ୍ୱର ନିର୍ବାଚନ ମଣ୍ଡଳୀରୁ ଜୟଯୁକ୍ତ ହେବା ସଙ୍ଗେ ସଙ୍ଗେ ରାଜ୍ୟରେ ସରକାର ଗଢ଼ିବା ପାଇଁ ଆବଶ୍ୟକ ସଂଖ୍ୟକ ବିଧାୟକ ମଧ୍ୟ ଜିତାଇ ଆଣିଥିଲେ । ଦୀର୍ଘ ୨୯ ବର୍ଷ ପରେ ପୁନଶ୍ଚ ମୁଖ୍ୟମନ୍ତ୍ରୀ ଭାବେ ନିର୍ବାଚିତ ହୋଇ ମାର୍ଚ୍ଚ ୫ ତାରିଖ, ତାଙ୍କ ସ୍ୱନକ୍ଷତ୍ର ଦିବସରେ ଶପଥ ଗ୍ରହଣ କଲେ ।

ମୁଖ୍ୟମନ୍ତ୍ରୀ ଭାବେ ୧୯୯୦ ମାର୍ଚ୍ଚ ୫ ତାରିଖରେ ଦାୟିତ୍ୱ ଗ୍ରହଣ କରି ତାଙ୍କର ପ୍ରିୟ ଓଡ଼ିଶାବାସୀଙ୍କ ପାଇଁ ସେ ବହୁ ଉନ୍ନତିକର ଯୋଜନା ପ୍ରଣୟନ କରିଥିଲେ । ବିଶେଷ କରି ପଞ୍ଚାୟତିରାଜ ବ୍ୟବସ୍ଥାରେ ମହିଳା, ହରିଜନ ଓ ଆଦିବାସୀମାନଙ୍କ ପାଇଁ ଆନୁପାତିକ ହାରରେ ସ୍ଥାନ ସଂରକ୍ଷଣ କରି ସେ ସମସ୍ତ ବର୍ଗର ଲୋକଙ୍କୁ ଶାସନରେ ଅଂଶ ଗ୍ରହଣ ନିମନ୍ତେ ଆଇନ ତିଆରି କରିଥିଲେ । ପ୍ରଥମ ଥର ୧୯୬୧ରେ ମୁଖ୍ୟମନ୍ତ୍ରୀ ଥିଲାବେଳେ ସେ ସରପଞ୍ଚମାନଙ୍କୁ ତାଙ୍କ ପଞ୍ଚାୟତର ମୁଖ୍ୟମନ୍ତ୍ରୀ କହି, ଗାଆଁ ଗହଳର ଲୋକମାନଙ୍କ ଉନ୍ନତି ପାଇଁ ଉତ୍ସାହିତ କରିଥିଲେ

ପଞ୍ଚାୟତମାନଙ୍କ ମଧ୍ୟରେ ଉନ୍ନୟନର ପ୍ରଗତି ପାଇଁ । ପ୍ରତିଯୋଗିତା ମନୋଭାବ ସୃଷ୍ଟି କରାଇ, ଜିଲ୍ଲା ସ୍ତରରେ ସର୍ବୋତ୍କୃଷ୍ଟ ପଞ୍ଚାୟତର ସରପଞ୍ଚଙ୍କୁ ପୁରସ୍କାର ପ୍ରଦାନ କରିବାର ସରକାରୀ ବ୍ୟବସ୍ଥା କରାଇଥିଲେ ।

ବିଜୁବାବୁ କହୁଥିଲେ, ଗାଁ ଗଣ୍ଡା ହେଉଛି ଭାରତର ଆତ୍ମା । ଭାରତର ଗଣତନ୍ତ୍ର କେବଳ ନିର୍ବାଚନ ସର୍ବସ୍ୱ କିମ୍ବା କେତେଜଣ କୁହାଳିଆ ବା ତଥାକଥିତ ବୁଦ୍ଧିଜୀବୀମାନଙ୍କର ବିଳାସର କ୍ଷେତ୍ର ନୁହେଁ । ସାଧାରଣ ଲୋକମାନଙ୍କୁ ପ୍ରତ୍ୟେକ କ୍ଷେତ୍ରରେ ଘନିଷ୍ଠ ଭାବେ ଜଡ଼ିତ କରିବା ପାଇଁ ପଞ୍ଚାୟତ ପ୍ରତିନିଧିମାନଙ୍କୁ ସେ ପରାମର୍ଶ ଦେଉଥିଲେ । ଖଟିଖିଆ ମଜଦୁରମାନଙ୍କ ଦୈନିକ ମଜୁରି ସେ ୧୧ଟଙ୍କାରୁ ଏକାଥରକେ ୨୫ ଟଙ୍କାକୁ ବୃଦ୍ଧି କରି ସେମାନଙ୍କ ଶ୍ରଦ୍ଧାଭାଜନ ହୋଇଥିଲେ ।

ମହାତ୍ମା ଗାନ୍ଧୀଙ୍କ ପ୍ରତି ତାଙ୍କର ଯଥେଷ୍ଟ ଶ୍ରଦ୍ଧା ଓ ସମ୍ମାନ ଥିଲା । ମହିଳାମାନଙ୍କ ଉନ୍ନତି ନିମନ୍ତେ ପ୍ରତିଟି କ୍ଷେତ୍ରରେ ମହିଳାଙ୍କ ପାଇଁ ସ୍ଥାନ ସଂରକ୍ଷଣ ଓ ମହିଳା ବିକାଶ ନିଗମ ଗଠନ ପ୍ରଭୃତି କାର୍ଯ୍ୟ ସେ ମୁଖ୍ୟମନ୍ତ୍ରୀ ଥିବାବେଳେ ଆରମ୍ଭ କରିଯାଇଛନ୍ତି । ଚାକିରି କ୍ଷେତ୍ରରେ ମହିଳାମାନଙ୍କ ପାଇଁ ୩୦% ସଂରକ୍ଷଣ ବ୍ୟବସ୍ଥା କରି ସେ ସମଗ୍ର ଭାରତବର୍ଷରେ ପଥ ପ୍ରଦର୍ଶକ ସାଜିଛନ୍ତି ।

ଓଡ଼ିଶାରେ ସେ ଶିଳ୍ପ ବିପ୍ଳବ ପାଇଁ ପ୍ରଗାଢ଼ ଉଦ୍ୟମ କରିଥିଲେ । ଶିଳ୍ପ ବିକାଶ ପାଇଁ ନିଜ ଚେଷ୍ଟାରେ ଚୌଦ୍ୱାରରେ ଓ.ଟି.ଏମ୍. ଲୁଗାକଳ, କଳିଙ୍ଗ ଟିଉବ୍ସ ଓ ଟାଇଲ କାରଖାନା ପ୍ରତିଷ୍ଠା କରିଥିଲେ । ପରବର୍ତ୍ତୀ ସମୟରେ ବାଲିମେଳା ଜଳ ବିଦ୍ୟୁତ୍ ଓ ଜଳସେଚନ ଯୋଜନା, ସୁନାବେଡ଼ା ମିଗ୍ ବିମାନ କାରଖାନା, ରାୟଗଡା ନିକଟରେ କାଗଜ କଳ, ଥିରୁବାଲିରେ ଫେରୋକ୍ରୋମ କାରଖାନା, ଜୟପୁରରେ ବିମାନ ଅବତରଣ କେନ୍ଦ୍ର ପ୍ରତିଷ୍ଠା କରାଇ ସେ ଆମର ସ୍ମରଣୀୟ ହୋଇଯାଇଛନ୍ତି ।

ପାରାଦ୍ୱୀପ ବନ୍ଦର ଅଞ୍ଚଳକୁ ସଂଯୋଗ କରୁଥିବା ଦୈତାରୀ ହାଇୱେ ଏକ୍ସପ୍ରେସ ବିଜୁବାବୁଙ୍କର ମାନସ ପ୍ରସୂତ । ଏହି ରାସ୍ତାରେ ଦୈନିକ ହଜାର ହଜାର ଟ୍ରକ୍ ଯାତାୟାତ କରି ଆମ ପରିବହନ ବ୍ୟବସ୍ଥାକୁ ତ୍ୱରାନ୍ୱିତ କରୁଛି ଓ ଆମ ଦେଶର ବିପୁଳ ଖଣିଜ ସଂପଦ ବିଦେଶକୁ ରପ୍ତାନି କରି ଦେଶପାଇଁ ମୁଦ୍ରା ଅର୍ଜନର ପଥ ସୁଗମ କରିଛି ।

ଦରିଦ୍ର, ଆଦିବାସୀ, ହରିଜନମାନଙ୍କ ଅବସ୍ଥାର ଉନ୍ନତି ପାଇଁ ତାଙ୍କର ଦରଦୀ ହୃଦୟ ସଦା ବ୍ୟାକୁଳ ଥିଲା ଓ ସେଥିପାଇଁ ତାଙ୍କ ସରକାର ଆବଶ୍ୟକୀୟ ନିୟମ କାନୁନ୍ ପ୍ରଣୟନ କରିଥିଲେ । ଓଡ଼ିଶାର ୧୩ ଜିଲ୍ଲାକୁ ୩୦ଟି ଜିଲ୍ଲାରେ ପରିଣତ କରି ସେ ଶାସନକୁ ଲୋକଙ୍କ ନିକଟତର କରାଇଥିଲେ । କ୍ରୀଡ଼ା, ଯୁବ କଲ୍ୟାଣ ଓ ବିଜ୍ଞାନକୁ ଲୋକାଭିମୁଖୀ କରିବା ପାଇଁ ବିଜୁବାବୁ ଅଧିକ ଯତ୍ନଶୀଳ ଥିଲେ ।

ସେଥିପାଇଁ ଆଜି ଏହି ମହାନ୍ ନେତାଙ୍କ ଶ୍ରାଦ୍ଧ ଦିବସରେ କୋଟି କୋଟି ଓଡ଼ିଆ ତାଙ୍କୁ ସ୍ମରଣ କରି ଭକ୍ତି ନିବେଦନ କରୁଛନ୍ତି ।

'ଆମେ ଓଡ଼ିଆ' କାର୍ଯ୍ୟାଳୟ
ପାଣ୍ଡବ ନଗର, ଭୁବନେଶ୍ୱର



# ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ସଂକ୍ଷିପ୍ତ ଆଲେଖ୍ୟ

ରମାକାନ୍ତ ନାୟକ

ଭାରତର ଇତିହାସ, ପୁରାଣ, କିମ୍ବଦନ୍ତୀ, ପ୍ରାଚୀନ ସଂସ୍କୃତ, ପାଲି ସାହିତ୍ୟରେ କଳିଙ୍ଗ, ଉତ୍କଳ, ଉଡ୍ର ଓ ଓଡ୍ର ପ୍ରଭୃତି ନାମରେ ପରିଚିତ ଏବଂ ଏକଦା ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ପରିବ୍ୟାପ୍ତ ଏହି ଓଡ଼ିଶା ଭୂଖଣ୍ଡ ତା'ର ପୁଣ୍ୟତୋୟା ନଦନଦୀ ନିଘଞ୍ଚ ଅରଣ୍ୟ, ଉତ୍ତୁଙ୍ଗ ପର୍ବତ ଶ୍ରେଣୀ, ବିସ୍ତୃତ ସାମୁଦ୍ରିକ ତଟ ପ୍ରଭୃତି ପ୍ରାକୃତିକ ବିଭବ ଓ ସମୃଦ୍ଧ ଭାଷା, ସାହିତ୍ୟ, ସଂସ୍କୃତି ଏବଂ ଦରିଆପାରି ନୌବାଣିଜ୍ୟ ପାଇଁ ବିଶ୍ୱବିଦିତ ଥିଲା । ମାତ୍ର ପଞ୍ଚଦଶ ଶତାବ୍ଦୀର ପ୍ରାରମ୍ଭରୁ ଦୀର୍ଘ ଚାରିଶହ ବର୍ଷର ଅନ୍ଧକାରମୟ କାଳରାତ୍ରି, ଯେଉଁ ଅବଧିରେ ପ୍ରଳୟଙ୍କରୀ ବନ୍ୟା ଓ ଉତ୍କଟ ଦୁର୍ଭିକ୍ଷ ଭଳି ଭୟଙ୍କର ପ୍ରାକୃତିକ ବିଭୀଷିକା ସାଙ୍ଗକୁ ବିଦେଶୀମାନଙ୍କର ଏହି ରାଜ୍ୟ ଓ ଏହାର ଭାଷା ସଂସ୍କୃତି ଉପରେ ନଗ୍ନ ଆକ୍ରମଣ ଓଡ଼ିଆ ଜାତିର ତେଜୋଦୀପ୍ତ ଅସ୍ମିତାକୁ ଗ୍ରାସ କରିସାରିଥିଲା । ସେହି ସଂକଟାପନ୍ନ କ୍ଷଣରେ ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ଗୋପବନ୍ଧୁ ଦାସ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, କର୍ମବୀର ଗୌରୀଶଙ୍କର ରାୟ, ବ୍ୟାସକବି ଫକୀରମୋହନ ସେନାପତି, ପ୍ରକୃତି କବି ଗଙ୍ଗାଧର ମେହେର, କବିବର ରାଧାନାଥ ରାୟ, ନୀଳମଣି ବିଦ୍ୟାରତ୍ନ, ରାଜା ବୈକୁଣ୍ଠ ନାଥ ଦେ ପ୍ରମୁଖ ଉତ୍କଳମାତାର ବରପୁତ୍ରଗଣଙ୍କର ଆବିର୍ଭାବ ଜାତୀୟ ଜୀବନଶକ୍ତିକୁ ପୁନଃ ଜାଗ୍ରତ କରି ଓଡ଼ିଆ ଜାତିର ସ୍ୱାଭିମାନକୁ ସର୍ବଭାରତୀୟ ସ୍ତରରେ ପ୍ରତିଷ୍ଠା କରିବାରେ ସମର୍ଥ ହୋଇପାରିଥିଲା ।

୧୮୦୩ ଖ୍ରୀ:ରେ ଇଂରେଜମାନଙ୍କ ଓଡ଼ିଶା ଅଧିକାର ସହିତ ଏହି ରାଜ୍ୟର ମଧ୍ୟଯୁଗୀୟ ପରିଚିତି ନିଶ୍ଚିହ୍ନ ହୋଇ ଓଡ଼ିଶା କେବଳ ଗୋଟିଏ ଭୌଗଳିକ ନାମମାତ୍ର ଭାବରେ ସୂଚିତ ହେଲା । ଓଡ଼ିଆ ଭାଷୀମାନେ ବଙ୍ଗ, ବିହାର, ମଧ୍ୟପ୍ରଦେଶ ଓ ମାନ୍ଦ୍ରାଜରେ ବିଚ୍ଛିନ୍ନ ଓ ବିକ୍ଷିପ୍ତ ହୋଇ ରହିଥିଲେ । ଓଡ଼ିଶାର ଗଡ଼ଜାତ ଅଞ୍ଚଳରେ ଓଡ଼ିଆ ଭାଷୀମାନେ ବାସ କରୁଥିଲେ ମଧ୍ୟ ଓଡ଼ିଶା ସହିତ ସେମାନଙ୍କର ସାଂସ୍କୃତିକ ସମ୍ବନ୍ଧ ଅତ୍ୟନ୍ତ ଶିଥିଳ ଥିଲା । କଟକ, ପୁରୀ ଓ ବାଲେଶ୍ୱର ଅଞ୍ଚଳ ଓଡ଼ିଶା ନାମରେ ପରିଚିତ ଥିଲେ ହେଁ ଏହି ଅଞ୍ଚଳରେ ଅଣ ଓଡ଼ିଆମାନଙ୍କର ଆଧିପତ୍ୟ ଓଡ଼ିଆ ଜାତୀୟତାର ଉଦ୍‌ଗମନକୁ ବିଧ୍ୱସ୍ତ କରିଦେଉଥିଲା । ଓଡ଼ିଆ ଜାତି ଏହି ରାଜନୈତିକ, ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ ଅଧପତିତ ସ୍ଥିତିରେ ଉତ୍କଟ ସଂକଟ ଓ ବିପର୍ଯ୍ୟୟ ମଧ୍ୟରେ ଭାରସାମ୍ୟ ହରାଇ ସାରିଥିଲା ।

୧୮୬୬ ମସିହାରେ ଭୟଙ୍କର ନ'ଅଙ୍କ ଦୁର୍ଭିକ୍ଷର ପରବର୍ତ୍ତୀ କାଳରେ କେତେକ ଇଂରେଜ ଉଚ୍ଚାଧିକାରୀଙ୍କ ପ୍ରଚ୍ଛନ୍ନ ସମର୍ଥନରେ ଓଡ଼ିଶାରେ ଏକ ନବଜାଗରଣର ସୂତ୍ରପାତ ହେଲା । ଶିକ୍ଷାର ପ୍ରସାର, ଭାଷା ଆନ୍ଦୋଳନ, ମାତୃଭାଷାରେ ମୁଦ୍ରଣ ଯନ୍ତ୍ରର ବ୍ୟବହାର ଏବଂ ସର୍ବୋପରି ଉତ୍କଳର ସୁଯୋଗ୍ୟ ସନ୍ତାନ ମଧୁସୂଦନ ଦାସ, ଗୌରୀଶଙ୍କର ରାୟ, ଫକୀର ମୋହନ ସେନାପତି ଓ ରାଧାନାଥ ରାୟଙ୍କ ଗୁରୁତ୍ୱପୂର୍ଣ୍ଣ ଭୂମିକା ଯୋଗୁଁ ଓଡ଼ିଆ ଭାଷୀ ଜନତାଙ୍କ ମଧ୍ୟରେ ଏକ ରାଜନୈତିକ ସଚେତନତାର ସ୍ଫୁରଣ ଘଟିଲା । ୧୮୭୫ ଖ୍ରୀ:ରେ

ବାଲେଶ୍ୱରରେ ରାଜା ଶ୍ୟାମାନନ୍ଦ ଦେଓ ଏବଂ କଟକଠାରେ ମଧୁସୂଦନ ଦାସ ଓଡ଼ିଆଭାଷୀ ଅଞ୍ଚଳର ଏକତ୍ରିକରଣ ଉଦ୍ଦେଶ୍ୟରେ ସରକାରଙ୍କୁ ଦାବିପତ୍ର ପ୍ରଦାନ କରିଥିଲେ ।

ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟକୁ ଉଜ୍ଜୀବିତ କରିବା ପାଇଁ ଏବଂ ଓଡ଼ିଆମାନଙ୍କ ମଧ୍ୟରେ ଭ୍ରାତୃତ୍ୱର ଭାବ ଜାଗରଣ ପାଇଁ ୧୮୮୨ ଖ୍ରୀ:ରେ କଟକଠାରେ ପ୍ରତିଷ୍ଠିତ ହେଲା 'ଉତ୍କଳ ସଭା' । ଗୌରୀଶଙ୍କର ରାୟ, ମଧୁସୂଦନ ଦାସ ଓ ଚୌଧୁରୀ କାଶୀନାଥ ଦାସ ଏହି ସଂଗଠନ ମାଧ୍ୟମରେ ଓଡ଼ିଆ ଭାଷା ଆନ୍ଦୋଳନକୁ ତ୍ୱରାନ୍ୱିତ କଲେ । ୧୮୮୮ରେ ବଙ୍ଗର ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ଏସ.ସି. ବେଲେଙ୍କ ଓଡ଼ିଶା ଆଗମନ କାଳରେ କଟକଠାରେ ତାଙ୍କୁ ମଧ୍ୟପ୍ରଦେଶ, ମାନ୍ଦ୍ରାଜ ଓ ବଙ୍ଗରେ ଥିବା ବିଚ୍ଛିନ୍ନ ଓଡ଼ିଆ ଭାଷା ଅଞ୍ଚଳର ମିଶ୍ରଣ ପାଇଁ ଉତ୍କଳସଭା ପକ୍ଷରୁ ଏକ ସ୍ମାରକପତ୍ର ପ୍ରଦାନ କରାଯାଇଥିଲା । ୧୯୦୨ ଖ୍ରୀ:ରେ ବାଲେଶ୍ୱରର ରାଜା ବୈକୁଣ୍ଠନାଥ ଦେ ଭାରତର ବଡ଼ଲାଟ୍ ଲର୍ଡ଼ କର୍ଜନଙ୍କୁ ମଧ୍ୟ ଏହି ମର୍ମରେ ଏକ ଦାବିପତ୍ର ପ୍ରଦାନ କରିଥିଲେ । ସମ୍ବାଦପତ୍ରଗୁଡ଼ିକରେ ଏହି ଦାବି ସଂକ୍ରାନ୍ତୀୟ ସମ୍ବାଦ ବହୁଳ ଭାବରେ ପ୍ରକାଶିତ ହେବାରୁ ଓ ମଧୁସୂଦନ ଦାସଙ୍କ ଦ୍ୱାରା ପ୍ରଭାବିତ ହୋଇ ଲର୍ଡ଼ କର୍ଜନ ଓଡ଼ିଶା ଗସ୍ତରେ ଆସି ଓଡ଼ିଶାର କଳା ସ୍ଥାପତ୍ୟରେ ମୁଗ୍‌ଧ ହେବା ସହିତ ଏକତ୍ରିକରଣର ଆବଶ୍ୟକତାକୁ ହୃଦବୋଧ କରିଥିଲେ ।

୧୮୬୨ ଖ୍ରୀ:ରେ ପ୍ରଶାସନିକ ସୁବିଧା ନିମନ୍ତେ ସମ୍ବଲପୁର ଓ ତା'ର ସନ୍ନିକଟ ଅଞ୍ଚଳକୁ ମଧ୍ୟପ୍ରଦେଶ ସହିତ ସଂଯୁକ୍ତ କରାଯାଇଥିଲା । କିନ୍ତୁ ଏହାର ଶାସନ ବ୍ୟବସ୍ଥା ପରିଚାଳନା ସେହି ରାଜ୍ୟ ପାଇଁ ବାସ୍ତବରେ ସୁବିଧାଜନକ ନଥିଲା । ହିନ୍ଦୀଭାଷୀ ଅଧିକାରୀମାନେ ଓଡ଼ିଆଭାଷୀ ସମ୍ବଲପୁରରେ କାର୍ଯ୍ୟ କରିବା ପାଇଁ ପଶ୍ଚାତ୍‌ପଦ ହେଉଥିଲେ । ଭାଷା ହିଁ ଥିଲା ମୁଖ୍ୟ ପ୍ରତିବନ୍ଧକ । ଏହାକୁ ଏଡ଼ାଇବା ପାଇଁ ନାଗପୁରର ଚିଫ୍ କମିଶନର ତାଙ୍କ ବିଜ୍ଞାପନ ସଂଖ୍ୟା ୨୨୭, ତା ୧୫/୧/୧୮୯୫ରେ ସମ୍ବଲପୁରରେ ହିନ୍ଦୀ ଭାଷାକୁ ସରକାରୀ ଭାଷା ଭାବରେ ଘୋଷଣା କଲେ ଏବଂ ଏହା ୧୮୯୬ ଜାନୁଆରୀ ୧ ତାରିଖରୁ କାର୍ଯ୍ୟକାରୀ ହେଲା । ମାତ୍ର ସମ୍ବଲପୁରରେ ଏହି ବିଜ୍ଞାପନ ବିରୋଧରେ ପ୍ରବଳ ପ୍ରତିକ୍ରିୟା ପ୍ରକାଶ ପାଇଲା । ସମ୍ବଲପୁର ହିତୈଷିଣୀ ଓ Statesman of Calcuttaର ସମ୍ବାଦପତ୍ର ପୃଷ୍ଠାରେ ଏହି ଅନ୍ୟାୟ ଆଦେଶ ବିରୁଦ୍ଧରେ ଶାଣିତ ପ୍ରତିବାଦର ଚିତ୍ର ପ୍ରତିଫଳିତ ହେଲା । ଧରଣୀଧର ମିଶ୍ର ତତ୍‌କାଳୀନ ଭାଇସରାୟଙ୍କୁ ଏହି ଅବିଚାର ବିରୋଧରେ ଅବଗତ କରିବା ସହିତ ୧୮୯୭ରେ ବ୍ରିଟିଶ ସଂସଦରେ ସଦସ୍ୟମାନଙ୍କୁ ଏହି ସମ୍ବନ୍ଧରେ ହୃଦ୍‌ବୋଧ କରାଇଲେ । ବ୍ରଜମୋହନ ପଟ୍ଟନାୟକ, ବଳଭଦ୍ର ସୂପକାର, ମହନ୍ତ ବିହାରୀ ଦାସ, ମନମୋହନ ମିଶ୍ର ପ୍ରଭୃତି ବିଶିଷ୍ଟ ବ୍ୟକ୍ତିଗଣ ଏହି ନିଷ୍ପତ୍ତି ବିରୁଦ୍ଧରେ ଦୃଢ଼ ସ୍ୱର ଉତ୍ତୋଳନ କଲେ । ସେମାନଙ୍କର ଦାବିକୁ ସହୃଦୟତାର ସହିତ ବିଚାର କରିବାକୁ ଲର୍ଡ଼ କର୍ଜନ, ଆଣ୍ଡ୍ରୁ ଫ୍ରେଜରଙ୍କୁ ପରାମର୍ଶ ଦେଲେ । ସେତେବେଳେ ବୃହତ୍ ରାଜ୍ୟକୁ ବିଭାଜନ କରିବାର ଯୋଜନା କରୁଥିବା ଲର୍ଡ଼ କର୍ଜନଙ୍କ ପାଇଁ ଏହି ଦାବି ତାଙ୍କ ଇଚ୍ଛାର ଅନୁକୂଳ ଥିଲା । ଆଣ୍ଡ୍ରୁ ଫ୍ରେଜର ଏହି ପ୍ରସ୍ତାବକୁ ଅନୁଧ୍ୟାନ କରି ସମ୍ବଲପୁରକୁ ଓଡ଼ିଶା ସହିତ ମିଶ୍ରଣ ସହିତ ସେଠାରେ ଓଡ଼ିଆ ଭାଷାର ପୁନଃ ପ୍ରଚଳନ ପାଇଁ ସୁପାରିସ କଲେ । ଏହାକୁ ବିଚାର ପାଇଁ ଲର୍ଡ଼ କର୍ଜନ ତୁରନ୍ତ ଭାରତ ସରକାରଙ୍କ ଗୃହ ସଚିବ ଏଚ.କେ. ରିସ୍‌ଲେଙ୍କ ନିକଟକୁ କାର୍ଯ୍ୟାନୁଷ୍ଠାନ ପାଇଁ ପ୍ରେରଣ କଲେ । ୧୯୦୫ ଜୁଲାଇ ୧୯ ତାରିଖରେ ରିସଲେ ସମ୍ବଲପୁର ସମେତ ତତ୍ ସନ୍ନିକଟ କଳାହାଣ୍ଡି, ସୋନପୁର, ରେଢ଼ାଖୋଲ, ବାମଣ୍ଡା, ପାଟଣା, ବଣାଇ, ଗଙ୍ଗପୁର ପ୍ରଭୃତି ଅଞ୍ଚଳକୁ ଓଡ଼ିଶା ସହିତ ସମ୍ମିଶ୍ରଣ ପାଇଁ ନିର୍ଦ୍ଦେଶନାମା ଜାରି କଲେ । ଏହା 'ରସଲେ ନିର୍ଦ୍ଦେଶନାମା' ଭାବରେ ପ୍ରଖ୍ୟାତ ।

ମଧୁସୂଦନ ଦାସଙ୍କ ଉଦ୍ୟମକ୍ରମେ ୧୯୧୨ ଏପ୍ରିଲ ୧ ତାରିଖରେ ବଡ଼ଲାଟ୍ ଲର୍ଡ଼ ହାର୍ଡ଼ିଞ୍ଜଙ୍କ ଅବଧିରେ ଓଡ଼ିଶାର ସମ୍ବଲପୁର, ଅନୁଗୁଳ, ବାଲେଶ୍ୱର, କଟକ ଏବଂ ପୁରୀ ଜିଲ୍ଲାକୁ ବଙ୍ଗରୁ ବିଚ୍ଛିନ୍ନ କରାଯାଇ ବିହାର ସହିତ ମିଶ୍ରଣ କରିଦିଆଗଲା । କିନ୍ତୁ ଏହି ବିହାର-ଓଡ଼ିଶା ପ୍ରଦେଶ ନାମକ ଉଦ୍ଭବ ନୂତନ ରାଜ୍ୟ ଓଡ଼ିଆମାନଙ୍କ ପାଇଁ କୌଣସି ଲାଭପ୍ରଦ ହେବା ପରିବର୍ତ୍ତେ ବହୁ ଜଟିଳ ସମସ୍ୟାର କାରଣ

ହେଲା । ଇଂଲଣ୍ଡ ପାର୍ଲାମେଣ୍ଟର ହାଉସ୍ ଅଫ୍ ଲର୍ଡ଼ସ୍‌ରେ ଏହି ଅଦୂରଦର୍ଶୀ ନିଷ୍ପତ୍ତିକୁ ଲର୍ଡ଼ କର୍ଜନ କଠୋର ଭାଷାରେ ସମାଲୋଚନା କଲେ କିନ୍ତୁ ଇଂଲଣ୍ଡ ସରକାର ଏଥିପ୍ରତି କର୍ଣ୍ଣପାତ କଲେ ନାହିଁ ।

୧୯୦୩ରୁ ୧୯୨୦ ପର୍ଯ୍ୟନ୍ତ ଓଡ଼ିଶା ରାଜ୍ୟ ଗଠନରେ ଉତ୍କଳ ସମ୍ମିଳନୀର ଭୂମିକା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା । ଏହି କାଳରେ ଓଡ଼ିଆଭାଷୀ ଅଞ୍ଚଳକୁ ଏକତ୍ର କରିବା ପାଇଁ ଏଥିରେ ଅନେକ ଗୁରୁତ୍ୱପୂର୍ଣ୍ଣ ପ୍ରସ୍ତାବମାନ ଗୃହୀତ ହୋଇଥିଲା । ଉତ୍କଳଗୌରବଙ୍କ ଆବିର୍ଭାବ ପରେ ଏହି ସଂଗଠନ ନୂତନ ଉଦ୍ଦୀପନାରେ ଉଦ୍‌ବେଳିତ ହୋଇଉଠିଲା । ବିହାର-ଓଡ଼ିଶା ରାଜ୍ୟ ଗଠନକୁ ଏକ ରାଜନୈତିକ କୁଟଚକ୍ରାନ୍ତ ଭାବରେ ବର୍ଣ୍ଣନା କରି ଏଥିରେ ଓଡ଼ିଶାର ସମସ୍ୟାକୁ ପର୍ଯ୍ୟାଲୋଚନା କରାଗଲା । ବିହାର ଓଡ଼ିଶା ପ୍ରାଦେଶିକ ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ର ସଦସ୍ୟ ଭାବରେ ମଧୁସୂଦନ ଦାସ ଏଥିପ୍ରତି ସରକାରଙ୍କ ଦୃଷ୍ଟି ଆକର୍ଷଣ କଲେ । ଏପରିକି ତାଙ୍କର ଯୁକ୍ତି ଉପସ୍ଥାପନ ପାଇଁ ସେ ମଧ ଇଂଲଣ୍ଡ ଯାତ୍ରା କରିଥିଲେ । 'ଉତ୍କଳ ସମ୍ମିଳନୀ'ରେ ଯୋଗଦେବା ଉଦ୍ଦେଶ୍ୟରେ ଉତ୍କଳବାସୀଙ୍କୁ ଆହ୍ୱାନ କରିଥିଲେ ।

୧୯୧୭ରେ ମଧୁସୂଦନ ଦାସ ଭାରତ ଶାସନ ସଚିବ ମଣ୍ଟେଗୁଙ୍କ ଉତ୍କଳ ସମ୍ମିଳନୀ ମାଧ୍ୟମରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରିକରଣ ପାଇଁ ଅନୁରୋଧ କଲେ । ମାତ୍ର ମଣ୍ଟେଗୁ ଚେମ୍‌ସ ଫୋର୍ଡ଼ର ଖସଡ଼ାରେ ଏହି ସଂକ୍ରାନ୍ତରେ କୌଣସି ସୁପାରିସ ନଥିବାରୁ ତାହା ତାଙ୍କୁ ବ୍ୟଥିତ କଲା । ଏହା ବିରୁଦ୍ଧରେ ପ୍ରତିବାଦ କରିବାକୁ ଯାଇ ସେ ବିହାର-ଓଡ଼ିଶା ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ରୁ ଇସ୍ତଫା ପ୍ରଦାନ କଲେ । ସେହି କ୍ଷଣରେ ଅନୁଭୂତ ହେଉଥିଲା, ସତେଯେପରି ଓଡ଼ିଆମାନଙ୍କ ସ୍ୱତନ୍ତ୍ର ଓଡ଼ିଶା ରାଜ୍ୟ ଗଠନର ସ୍ୱପ୍ନ ଧୂଳିସାତ୍ ହୋଇଗଲା ।

ଉତ୍କଳ ସମ୍ମିଳନୀର ନେତୃବୃନ୍ଦଙ୍କ ଅନୁରୋଧକ୍ରମେ ସଚ୍ଚିଦାନନ୍ଦ ସିହ୍ନା ଓ କନିକାର ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ବଙ୍ଗ, ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶରେ ରହିଥିବା ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ବିହାର-ଓଡ଼ିଶା ଡ଼ିଭିଜନରେ ମିଶ୍ରଣ ପାଇଁ ୧୯୨୦ ଜାନୁଆରୀ ୨୦ରେ ଅନୁଷ୍ଠିତ ଇମ୍ପେରିଆଲ ଲେଜିସଲେଟିଭ୍ କାଉନ୍‌ସିଲ୍ ବୈଠକରେ ପ୍ରସ୍ତାବ ଉପସ୍ଥାପନ କଲେ । ଏହି ପ୍ରସ୍ତାବକୁ ଭାରତର ବିଶିଷ୍ଟ ନେତାଗଣ ସ୍ୱାଗତ କରିଥିବା ବେଳେ, ମେଦିନପୁର ମିଶ୍ରଣକୁ ବଙ୍ଗ ଡ଼ିଭିଜନ, ଗଞ୍ଜାମ ଓ ବିଶାଖାପାଟଣା ମିଶ୍ରଣକୁ ମାନ୍ଦ୍ରାଜ ସରକାର ଓ ଖଡ଼ିଆଳର ମିଶ୍ରଣକୁ ମଧ୍ୟପ୍ରଦେଶ ସରକାର ବିରୋଧ କଲେ । ଏହି ଘଟଣା ଓଡ଼ିଆମାନଙ୍କ ମନରେ ତୀବ୍ର ଅସନ୍ତୋଷ ସୃଷ୍ଟି କଲା । ଏହି ପରିପ୍ରେକ୍ଷୀରେ ଲୋକମାନଙ୍କର ମତକୁ ଯଥାର୍ଥ ଭାବରେ ଉପସ୍ଥାପନ କରିବା ପାଇଁ ମାନ୍ଦ୍ରାଜ ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ର ସଭ୍ୟ ତଥା ସମ୍ବାଦପତ୍ର 'ଆଶା'ର ସଂପାଦକ ଶଶିଭୂଷଣ ରଥଙ୍କ ଦାବି ଅବିସ୍ମରଣୀୟ ।

ଏପରି ସନ୍ଧିକ୍ଷଣରେ ପାରଳାଖେମୁଣ୍ଡିର ମହାରାଜା ଗଜପତି କୃଷ୍ଣଚନ୍ଦ୍ର ନାରାୟଣ ଦେବଙ୍କର ଭୂମିକା ଅତ୍ୟନ୍ତ ପ୍ରଭାବଶାଳୀ ଥିଲା । ତାଙ୍କର ଯୁକ୍ତିନିଷ୍ଠ ଦାବିକୁ ଏଡ଼ାଇ ନ ପାରି ଇଂରେଜ ସରକାର ସି.ଏଲ୍.ଫିଲିପ୍ ଏବଂ ଏ.ସି/ଡ଼ଫ୍‌ଙ୍କୁ ନେଇ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଚିହ୍ନଟ କରିବା ପାଇଁ ଏକ କମିଟି ଗଠନ କଲେ । ଏହି କମିଟି ଅନୁଧ୍ୟାନ କରି ମାନ୍ଦ୍ରାଜ ଡ଼ିଭିଜନ ଅନ୍ତର୍ଗତ ମଣ୍ଡାସା, ଟେକାଲୀ, ତରଳ, ବୁଡ଼ରସିଂ, ଜଳନ୍ତର ଏବଂ ଗଞ୍ଜାମର ପାରଳାଖେମୁଣ୍ଡିକୁ ଓଡ଼ିଶା ସହିତ ମିଶ୍ରଣ ପାଇଁ ପ୍ରସ୍ତାବ ଦେଲେ । କିନ୍ତୁ ଏହାକୁ ମାନ୍ଦ୍ରାଜ ସରକାର ତୀବ୍ର ବିରୋଧ କଲେ । ଏହା ସତ୍ତ୍ୱେ ସେଠାକାର ଓଡ଼ିଆମାନଙ୍କ ମଧ୍ୟରେ ଏହି ପ୍ରସ୍ତାବ ନୂତନ ଆଶା ସଂଚାର କଲା । ଅନ୍ୟପକ୍ଷରେ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ଉଦ୍ୟମ ଯୋଗୁଁ ସ୍ୱତନ୍ତ୍ର ପ୍ରଦେଶ ଗଠନ ଅଭିଯାନକୁ ମହାତ୍ମା ଗାନ୍ଧୀ କଂଗ୍ରେସ ସଂଗଠନ ଭିତରେ ଓ ବାହାରେ ସ୍ପଷ୍ଟ ଭାବରେ ଅକୁଣ୍ଠିତ ସମର୍ଥନ କରିବା ସହିତ ଏହା ସପକ୍ଷରେ ଇଂରେଜ ସରକାରଙ୍କୁ ପ୍ରଭାବିତ କରିଥିଲେ ।

୧୯୨୮ ଡ଼ିସେମ୍ବର ୧୨ରେ ଇଂରେଜ ସରକାରଙ୍କ ପ୍ରେରିତ ସାଇମନ କମିଶନକୁ ଜାତୀୟ କଂଗ୍ରେସ ଘୋର ବିରୋଧ କରୁଥିବା ବେଳେ, ପାଟଣା ରେଳଷ୍ଟେସନଠାରେ

କନିକା ରାଜାଙ୍କ ନେତୃତ୍ୱରେ ଉତ୍କଳ ସମ୍ମିଳନୀ ଭବ୍ୟ ସ୍ୱାଗତ ଜ୍ଞାପନ କଲା । ଏଥିରେ ଅଭିଭୂତ ହୋଇ ସାଇମନ କମିଶନ ଓଡ଼ିଆମାନଙ୍କ ଦାବିକୁ ବିଚାର କରିବା ନିମନ୍ତେ ସି.ଆର ଅଟଲୀଙ୍କ ନେତୃତ୍ୱରେ ଡକ୍ଟର. ଏ. ସୁରଓ୍ୱର୍ଦ୍ଦି, କନିକା ନରେଶ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ଓ ଲକ୍ଷ୍ମୀଧର ମହାନ୍ତିଙ୍କୁ ନେଇ ଏକ ଉପକମିଟି ଗଠନ କଲେ । ଏହି କମିଟି ଅନୁଗୁଳ, ବଙ୍ଗ ପ୍ରଦେଶର ମେଦିନପୁର, ମାନ୍ଦ୍ରାଜର ଗଞ୍ଜାମ ଓ ମଧ୍ୟପ୍ରଦେଶର ଖଡ଼ିଆଳ ଅଞ୍ଚଳକୁ ଓଡ଼ିଶା ସହିତ ମିଶ୍ରଣ ପାଇଁ ସୁପାରିସ କଲେ । କିନ୍ତୁ ଏହି ପ୍ରସ୍ତାବକୁ ଅନ୍ୟ ସମସ୍ତ ସରକାରମାନେ ଗ୍ରହଣ କରିବାକୁ ମନସ୍ଥ କରିଥିବା ବେଳେ ମାନ୍ଦ୍ରାଜ ସରକାର ଏହାକୁ ବିରୋଧ କଲେ । ତଥାପି ଅଟଲୀ କମିଟିର ସୁପାରିସ ଓଡ଼ିଆମାନଙ୍କ ମନରେ ନବ ଉନ୍ମାଦନା ସୃଷ୍ଟି କଲା ।

୧୯୩୦ରେ ଭାରତୀୟ ଜାତୀୟ କଂଗ୍ରେସର ବର୍ଜନ ସତ୍ତ୍ୱେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ପ୍ରଥମ ଗୋଲଟେବୁଲ ବୈଠକରେ ଯୋଗ ଦେଇ ଅନେକ ପ୍ରତିବନ୍ଧକ ଅତିକ୍ରମ କରି ସଂକ୍ଷିପ୍ତ ଅଥଚ୍ ଏକ ଓଜସ୍ୱୀ ଉଦ୍‌ବୋଧନ ମାଧ୍ୟମରେ ଓଡ଼ିଆମାନଙ୍କ ହିତପାଇଁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ପ୍ରସ୍ତାବ ସଂପର୍କରେ ସମସ୍ତଙ୍କୁ ହୃଦ୍‌ବୋଧ କରାଇ ପାରିଥିଲେ । ଫଳରେ ଚୂଡ଼ାନ୍ତ ପଦକ୍ଷେପ ନେବାକୁ ଇଂରେଜ ସରକାର ଅଗ୍ରସର ହେଲେ । ଇଂଲଣ୍ଡ ଅବସ୍ଥାନ କାଳରେ ରାଜା କୃଷ୍ଣଚନ୍ଦ୍ର ଭାରତ ସଚିବ ସାର୍ ସାମୁଏଲ୍ ହୋରେ ଓ ବିଶିଷ୍ଟ ପଦାଧିକାରୀମାନଙ୍କୁ ସାକ୍ଷାତ୍ କରି ସ୍ୱତନ୍ତ୍ର ପ୍ରଦେଶ ଗଠନ ପ୍ରତି ଦୃଷ୍ଟି ଆକର୍ଷଣ କରିବାରେ ସକ୍ଷମ ହୋଇଥିଲେ । ଫଳତଃ ଓଡ଼ିଶାର ସୀମା ନିର୍ଦ୍ଧାରଣ ପାଇଁ ୧୯୩୧ରେ ସାମୁଏଲ ଓ.ଡ଼ୋନେଲଙ୍କ ଅଧ୍ୟକ୍ଷତାରେ ଅନ୍ୟ ଏକ କମିଟି ଗଠିତ ହେଲା । ଏହି କମିଟି ଜାମସେଦପୁର, ଚାଇଁବସା, ସମ୍ବଲପୁର, ରାୟପୁର, ମେଦିନପୁର, ଗୋପାଳପୁର, ଓ୍ୱାଲଟିୟର, କୋକୋନଡ଼ା, ଗଞ୍ଜାମ ପ୍ରଭୃତି ସ୍ଥାନ ଭ୍ରମଣ କରି ୪୧୦ ଜଣ ବ୍ୟକ୍ତିଙ୍କର ମତାମତ ସଂଗ୍ରହ ପରେ ୧୯୩୨ ଏପ୍ରିଲ ୧୯ରେ ନୂତନ ପ୍ରଦେଶରେ ଅନୁଗୁଳ, ଖଡ଼ିଆଳ, ରାୟପୁର, ଗଞ୍ଜାମ ଜିଲ୍ଲାର ବୃହତ୍ ଅଂଶ ଓ ବିଶାଖାପାଟଣା ଆଦି ସାମିଲ କରିବାକୁ ସୁପାରିସ କଲେ । ଏହି କମିଟିର ବିବରଣୀକୁ ଅନୁଧ୍ୟାନ କରି ଭାରତ ରାଜ୍ୟ ସଚିବ ସାର୍ ସାମୁଏଲ ହୋରେ ଓଡ଼ିଶା ପ୍ରଦେଶ ଗଠନ ଘୋଷଣା କଲେ । ୧୯୩୩ ମାର୍ଚ୍ଚ ୧୮ ତାରିଖରେ ଏହି ଉଦ୍ଦେଶ୍ୟରେ ଏକ ଶ୍ୱେତପତ୍ର ପ୍ରକାଶିତ ହେଲା । କିନ୍ତୁ ପରିତାପର ବିଷୟ, ଏଥିରେ ପୂର୍ବଘୋଷିତ ଅଞ୍ଚଳ ମଧ୍ୟରୁ ବିଶାଖାପାଟଣା, ଜଳନ୍ତର, ମଳିହାସ ଏବଂ ପାରଳାଖେମୁଣ୍ଡିକୁ ଅନ୍ତର୍ଭୁକ୍ତ କରାଯାଇ ନଥିଲା । ଏହି କାରଣରୁ ଓଡ଼ିଆଭାଷୀ ଅଞ୍ଚଳରେ ପ୍ରବଳ ଜନ ଅସନ୍ତୋଷ ଦେଖାଗଲା । ମହାରାଜା କୃଷ୍ଣଚନ୍ଦ୍ରଙ୍କ ଅଧିନାୟକତ୍ୱରେ ଓଡ଼ିଆ ପ୍ରତିନିଧିମାନେ ହୋରେଙ୍କୁ ଲଣ୍ଡନରେ ସାକ୍ଷାତ୍ କରି ଜୟପୁର ଓ ପାରଳାଖେମୁଣ୍ଡିକୁ ପ୍ରସ୍ତାବିତ ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣ କରିବାକୁ ନିବେଦନ କଲେ । ଏହାକୁ ସହାନୁଭୂତିର ସହିତ ବିଚାର କରିବାକୁ ଇଂରେଜ ସରକାର ପ୍ରତିଶ୍ରୁତି ଦେଲେ । ୧୯୩୪ରେ ରାଜା ଏକ ପ୍ରତିନିଧି ଦଳ ସହିତ ସିମ୍‌ଲାଠାରେ ବଡ଼ଲାଟ୍‌ଙ୍କୁ ସାକ୍ଷାତ୍ କରି ପୁନର୍ବାର ତାଙ୍କ ଦାବି ଉପସ୍ଥାପନ କଲେ ।

ଇତିମଧ୍ୟରେ ଲର୍ଡ଼ ଲିନଲିଥିଗୋଙ୍କ ନେତୃତ୍ୱରେ ଗଠିତ ଜଏଣ୍ଟ ପାର୍ଲାମେଣ୍ଟାରୀ କମିଟି ଓଡ଼ିଆବାସୀଙ୍କ ଦାବିକୁ ପୁନର୍ବାର ଅନୁଧ୍ୟାନ କରି ଅନୁଗୁଳ, ପଦ୍ମପୁର, ଖଡ଼ିଆଳ, ଗଞ୍ଜାମ, ବ୍ରହ୍ମପୁର, ଜୟପୁର, ପାରଳାଖେମୁଣ୍ଡିର ଶତକଡ଼ା ୩୦ ଭାଗ, ମଳିହାସ ଓ ଜଳନ୍ତରକୁ ଓଡ଼ିଶା ଡ଼ିଭିଜନ ସହିତ ମିଶ୍ରଣ ପୂର୍ବକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ସୁପାରିସ କଲେ । ୧୯୩୩ ଡ଼ିସେମ୍ବର ୨୦ ତାରିଖରେ ସାର୍ ଜନ୍ ଅଷ୍ଟିନ ହବାକଙ୍କ ଅଧ୍ୟକ୍ଷତାରେ ଗଠିତ ଓଡ଼ିଶା ପ୍ରଶାସନିକ କମିଟି କଟକକୁ ଓଡ଼ିଶାର ରାଜଧାନୀ ଓ ପୁରୀକୁ ଗ୍ରୀଷ୍ମକାଳୀନ ରାଜଧାନୀ, ଗୋଟିଏ ଉଚ୍ଚ ନ୍ୟାୟାଳୟ ଓ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ସହିତ ଶିକ୍ଷା ନିର୍ଦ୍ଦେଶକ, ପୁଲିସ୍ ଇନ୍ସପେକ୍ଟର ଜେନେରାଲ ଏବଂ ରାଜସ୍ୱ କମିଶନର ପଦବୀ ସୃଷ୍ଟି କରିବାକୁ ପ୍ରସ୍ତାବ ଦେଇଥିଲେ । ୧୯୩୫ରେ ପ୍ରଣିତ ଭାରତ ଶାସନ ଆଇନରେ ୨୮୯ ଧାରା ଅନୁଯାୟୀ ଓଡ଼ିଶା ଓ ସିନ୍ଧୁ ପ୍ରଦେଶ ଗଠନକୁ ସ୍ୱୀକୃତି ପ୍ରଦାନ କରାଗଲା ଏବଂ

ଏହା ୧୯୩୬ ମାର୍ଚ୍ଚ ୩ ତାରିଖରେ ଇଂରେଜ ସମ୍ରାଟ୍‌ଙ୍କର ଅନୁମୋଦନ ଲାଭ କଲା । ତା'ପରେ ୧୯୩୬ ଅପ୍ରେଲ ଏକ ତାରିଖରେ ଜନ୍ମନେଲା ସ୍ୱତନ୍ତ୍ର ଓଡ଼ିଶା ରାଜ୍ୟ । ଭାରତବର୍ଷର ପ୍ରଥମ ଭାଷାଭିତ୍ତିକ ଏହି ରାଜ୍ୟ ଓଡ଼ିଶାର ଆୟତନ ରହିଲା ୩୨,୬୯୫ ବର୍ଗମାଇଲ ଓ ଜନସଂଖ୍ୟା ୮,୦୪୩, ୬୮୧ । ରେଭେନ୍ସା ମହାବିଦ୍ୟାଳୟର ପ୍ରେକ୍ଷାଳୟରେ ଆୟୋଜିତ ଐତିହାସିକ ଉତ୍ସବରେ ପାଟନା ଉଚ୍ଚ ନ୍ୟାୟାଳୟର ମୁଖ୍ୟ ବିଚାରପତି ଓଡ଼ିଶାର ପ୍ରଥମ ରାଜ୍ୟପାଳ ଭାବରେ ସାର୍ ଜନ୍ ଅଷ୍ଟିନ୍ ହବାକ୍‌ଙ୍କୁ ଶପଥପାଠ କରାଇଥିଲେ । ଓଡ଼ିଆମାନଙ୍କ ବହୁ ଇପ୍‌ସିତ ସ୍ୱପ୍ନ ସାକାର ହେଲା, କିନ୍ତୁ ଏହି ଉତଫୁଲ୍ଲିତ ମୁହୂର୍ତ୍ତକୁ ଅନୁଭବ କରିବାକୁ ସେତେବେଳେ ଏଥିପାଇଁ ନିଷ୍ଠାର ସହିତ ଉତ୍ସର୍ଗୀକୃତ ଉତ୍କଳ ଜନନୀର ଯୋଗ୍ୟ ସନ୍ତାନ ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ଗୋପବନ୍ଧୁ ଦାସ, ବ୍ୟାସକବି ଫକୀରମୋହନ ସେନାପତି, ପ୍ରକୃତି କବି ଗଙ୍ଗାଧର ମେହେର ପ୍ରମୁଖ ଇହଧାମରେ ନଥିଲେ ।

ପ୍ରାକ୍ତନ ଅଧ୍ୟକ୍ଷ-ଆନନ୍ଦପୁର ମହାବିଦ୍ୟାଳୟ
ଆନନ୍ଦପୁର(କଞ୍ଚସାହି), କେନ୍ଦୁଝର

# ନମୋ ନମୋ ଜଗନ୍ନାଥ

ସଂଗ୍ରାମ କେଶରୀ ମହାନ୍ତି

ନମୋ ନମୋ ଜଗନ୍ନାଥ
କୃଷ୍ଣ ଦାମୋଦର
ଗୋଲକବିହାରୀ ହରି
କରୁଣା-ସାଗର ।



ନାରାୟଣ ନିରଞ୍ଜନ ଅନନ୍ତ ଅଚ୍ୟୁତ
ଗୋବିନ୍ଦ ଗୋପାଳ ଗିରିଧର ଗୋପୀନାଥ
ନମୋ ଶ୍ରୀନୀଳମାଧବ ଶବର ଠାକୁର ।

କମଳାକାନ୍ତ ଗୋବିନ୍ଦ ଯଶୋଦାନନ୍ଦନ
ପତିତପାବନ ପ୍ରଭୁ ଶ୍ରୀବତ୍ସଲାଞ୍ଛନ
ନମୋ ବାଞ୍ଛାକଳ୍ପଦ୍ରୁମ ପ୍ରେମ ଅବତାର ।

ଜନାର୍ଦ୍ଦନ ପୀତବାସ ଶ୍ରୀମଧୁସୂଦନ
ବୈକୁଣ୍ଠବିହାରୀ ସ୍ୱାମୀ ଆରତଭଞ୍ଜନ
ନମୋ ନମୋ ଶଙ୍ଖ ଚକ୍ର ଗଦା ପଦ୍ମଧର ।

ଜେଲ୍ ମାର୍ଗ, ବାରିପଦା
ପୋ- ଭଞ୍ଜପୁର, ଜିଲ୍ଲା-ମୟୂରଭଞ୍ଜ
ପିନ୍-୭୫୭୦୦୨



# ଉତ୍କଳଗୌରବ ମଧୁସୂଦନ ଦାସ

ଉତ୍କଳ ଗୌରବ ମଧୁସୂଦନ ଦାସ ଥିଲେ ଓଡ଼ିଆ ଜାତିର ଗର୍ବ ଓ ଗୌରବର ପ୍ରତୀକ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ସେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ଓଡ଼ିଶାରେ ନୂତନ ରାଜନୈତିକ ଚେତନା ସୃଷ୍ଟି କରି ଓଡ଼ିଶାର ଏବଂ ଓଡ଼ିଆ ଜାତିର ଉନ୍ନତି ଓ ସ୍ୱାର୍ଥରକ୍ଷା ତଥା ସ୍ୱାଭିମାନ ବଜାୟ ରଖିବା ପାଇଁ ମଧୁବାବୁ ସର୍ବସ୍ୱ ତ୍ୟାଗ କରିଥିଲେ । ଛାତ୍ର ଜୀବନଠାରୁ ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କର ଜୀବନ ଥିଲା ସଂଘର୍ଷମୟ । ସେ ସାରାଜୀବନ ଦେଶ ଓ ଜାତି ପାଇଁ ସଂଘର୍ଷ କରି ଭାରତବର୍ଷରେ ଓଡ଼ିଆ ଜାତିର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଥିଲେ । ଯାହାଫଳରେ ଓଡ଼ିଆ ଜାତି ଆଜି ଭାରତବର୍ଷରେ ଏକ ସ୍ୱତନ୍ତ୍ର ମର୍ଯ୍ୟାଦାପୂର୍ଣ୍ଣ ଆସନ ହାସଲ କରିପାରିଛି ।



ମଧୁସୂଦନ ଦାସ ୧୮୪୮ ମସିହା ଏପ୍ରିଲ ୨୮ ତାରିଖ ଦିନ କଟକ ଜିଲ୍ଲାର ସତ୍ୟଭାମାପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଚୌଧୁରୀ ରଘୁନାଥ ଦାସ ଓ ମାତାଙ୍କ ନାମ ପାର୍ବତୀ ଦେବୀ । ଶୈଶବାବସ୍ଥାରୁ ମଧୁସୂଦନ ମାତା ପାର୍ବତୀ ଦେବୀଙ୍କର ଧର୍ମପୂତ ଜୀବନଶୈଳୀରେ ପ୍ରଭାବିତ ହୋଇଥିଲେ । ସେ ତାଙ୍କ ମା'ଙ୍କଠାରୁ ଶିଖିଥିଲେ ''ଆଲୋ ସଖୀ ଆପଣା ମହତ ଆପେ ରଖି ।'' ଯାହାକୁ ପାଥେୟ କରି ଉତ୍ତର ଜୀବନରେ ସେ ବହୁ ଉର୍ଦ୍ଧ୍ୱକୁ ଉଠି ପାରିଥିଲେ ।

ଚାଟଶାଳୀ ପାଠ ଶେଷ କରିବା ପରେ ମଧୁସୂଦନ ସତ୍ୟଭାମାପୁର ନିକଟବର୍ତ୍ତୀ ମହାସିଙ୍ଗପୁର ଭର୍ଣ୍ଣାକୁଲାର ସ୍କୁଲରେ ପଢ଼ିଥିଲେ । ତା'ପରେ ହାଇସ୍କୁଲରେ ପଢ଼ିବା ପାଇଁ କଟକ ଯାଇ ଜିଲ୍ଲା ସ୍କୁଲରେ ନାମ ଲେଖାଇଲେ ଏବଂ ୧୮୬୪ ମସିହାରେ ୧୬ ବର୍ଷ ବୟସରେ ଏଣ୍ଟ୍ରାନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ଏଣ୍ଟ୍ରାନ୍ସ ପାଶ୍ ପରେ ବାପାଙ୍କର ଇଚ୍ଛା ଥାଏ ସେ ଚାକିରି କରନ୍ତୁ କିନ୍ତୁ ମଧୁବାବୁଙ୍କ ଇଚ୍ଛା ଥାଏ ସେ ଉଚ୍ଚଶିକ୍ଷା ଲାଭ କରି ଓଡ଼ିଶାର ପ୍ରଥମ ଗ୍ରାଜୁଏଟ୍ ହେବେ । ବାପାଙ୍କର ତୀବ୍ର ବିରୋଧ ସତ୍ତ୍ୱେ ମଧୁବାବୁ ଉଚ୍ଚଶିକ୍ଷା ଲାଭ କରିବା ପାଇଁ ଦୃଢ଼ ସଂକଳ୍ପ ନେଇ କିଛି ଦିନ ପାଇଁ ବାଲେଶ୍ୱର ଜିଲ୍ଲା ସ୍କୁଲରେ ଶିକ୍ଷକତା କରିଥିଲେ ଓ ତତ୍‌ପରେ ଉଚ୍ଚଶିକ୍ଷା ପାଇଁ କଲିକତା ଯାଇ ୧୮୭୦ ମସିହାରେ ଓଡ଼ିଶାର ପ୍ରଥମ ଗ୍ରାଜୁଏଟ୍ ଭାବେ ବି.ଏ. ପାଶ୍ କଲେ । ସେ ୧୮୭୩ ମସିହାରେ ଏମ୍.ଏ. ଓ ତତ୍‌ପରେ ବି.ଏଲ୍. ପାଶ୍ କରିଥିଲେ । ଇତ୍ୟବସରରେ ତାଙ୍କର ବିବାହ ସରିଥାଏ ।

ପତ୍ନୀ ସୌଦାମିନୀ ଥିଲେ ବଙ୍ଗୀୟ ଖ୍ରୀଷ୍ଟିୟାନ୍ ସଂପ୍ରଦାୟର । କଲିକତା ଆସିବା ପରଠାରୁ ମଧୁବାବୁ ମଧ ଖ୍ରୀଷ୍ଟିୟାନ୍ ଧର୍ମରେ ଦୀକ୍ଷିତ ହୋଇ ସାରିଥିଲେ ଏବଂ ପିତାଙ୍କ ଦ୍ୱାରା ତେଜ୍ୟପୁତ୍ର ଭାବେ ଘୋଷିତ ହୋଇଥିଲେ ।

ଓକିଲାତି ପାଶ୍ କରିବା ପରେ ମଧୁବାବୁ ପ୍ରଥମେ କିଛି ବର୍ଷ ପାଇଁ କଲିକତା ହାଇକୋର୍ଟରେ ଓଡ଼ିଆ ଅନୁବାଦକ ଭାବେ କାର୍ଯ୍ୟ କରିଥିଲେ । ସେହି ସମୟରେ ପତ୍ନୀ ସୌଦାମିନୀଙ୍କର ବିୟୋଗ ଘଟିଥିଲା ଏବଂ ଏହା ତାଙ୍କୁ ଏତେ ବ୍ୟଥିତ କରିଥିଲା ଯେ, ସେ ଆଉ ପୁନର୍ବାର ବିବାହ କରି ନଥିଲେ । ତତ୍‌ପରେ କଲିକତାର ଆଲିପୁର କୋର୍ଟରେ ସେ ତାଙ୍କର ଓକିଲାତି ଜୀବନ ଆରମ୍ଭ କରିଥିଲେ । କଲିକତାରେ ସେ ଥିଲେ ପ୍ରଥମ ଓଡ଼ିଆ ଓକିଲ । କିଛିଦିନ ପରେ କେତେଜଣ ବନ୍ଧୁଙ୍କ ଅନୁରୋଧକ୍ରମେ ମଧୁବାବୁ ୧୮୮୧ ମସିହାରୁ କଟକରେ ଓକିଲାତି ଆରମ୍ଭ କଲେ । ମଧୁବାବୁଙ୍କ ତୀକ୍ଷ୍ଣ ବୁଦ୍ଧି ହେତୁ ସେ ଓକିଲାତିରେ ପାରଦର୍ଶିତା ହାସଲ କରିଥିଲେ । ଓଡ଼ିଆ ଡିଗ୍ରୀଧାରୀ ଆଇନଜୀବୀ ଭାବେ ସେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଜମିଦାର ଓ ରାଜାମାନଙ୍କ ନିକଟରେ ପରିଚିତ ହେଲେ । ଓକିଲାତି ଜୀବନରେ ସେ ବହୁ ଦରିଦ୍ର ଲୋକଙ୍କ ପାଇଁ ବିନା ଫିସ୍‌ରେ ଲଢ଼ି ସେମାନଙ୍କୁ ଅତ୍ୟାଚାରୀ ଧନୀକମାନଙ୍କ କବଳରୁ ରକ୍ଷା କରିଥିଲେ । ତେଣୁ ତାଙ୍କର ଅସାଧାରଣ ଧୀଶକ୍ତି ପାଇଁ ପରମ ସମ୍ମାନ ସ୍ୱରୂପ ଲୋକେ ତାଙ୍କୁ 'ମଧୁ ବାରିଷ୍ଟର' ବୋଲି କହୁଥିଲେ । ସେତେବେଳେ ଇଂରେଜ ସରକାର ଓଡ଼ିଶାର ଗଜପତି ରାଜାଙ୍କ ହାତରୁ ଚକ୍ରାନ୍ତ କରି ଜଗନ୍ନାଥ ମନ୍ଦିର ପରିଚାଳନା ଭାର କାଢ଼ି ନେବା ପାଇଁ ଆଇନ କରିବାରୁ ମଧୁବାବୁ ସେହି ଆଇନ ରଦ୍ଦ ହେବା ପର୍ଯ୍ୟନ୍ତ ଲଢ଼େଇ କରି ଓଡ଼ିଶାର ସମ୍ମାନ ରକ୍ଷା କରିଥିଲେ । କେନ୍ଦୁଝର ରାଜାଙ୍କୁ ତାଙ୍କ ରାଜଗାଦି ଫେରାଇ ଦେବା ପାଇଁ ସେ ସାର୍ ଚାର୍ଲସ୍ ଇଲିଅଟ୍‌ଙ୍କୁ ସାକ୍ଷାତ କରି ଏପରି ଭାବେ ପ୍ରଭାବିତ କରିଥିଲେ ଯେ, ଶେଷରେ ସେ କେନ୍ଦୁଝର ରାଜାଙ୍କୁ ତାଙ୍କ ରାଜ୍ୟ ଫେରାଇ ଦେଲେ । ଏହିପରି ଭାବେ ଆଇନ ବ୍ୟବସାୟରେ ତାଙ୍କର ଖ୍ୟାତି ଓ ପ୍ରତିଷ୍ଠା ବୃଦ୍ଧି ପାଇଲା ।

ଓଡ଼ିଶା ଓ ଓଡ଼ିଆଙ୍କ ପାଇଁ ମଧୁବାବୁଙ୍କ ମନ ଭିତରେ ସର୍ବଦା ଦରଦ ଭରି ରହିଥିଲା । ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକ ଅବହେଳିତ ଅବସ୍ଥାରେ ଥିବା ସେ ଉପଲବ୍ଧି କଲେ । ମଧୁବାବୁଙ୍କ ପ୍ରଚେଷ୍ଟାରେ ୧୯୦୩ ମସିହାରେ ଆହୂତ ହେଲା ଉତ୍କଳ ସମ୍ମିଳନୀ, ଯାହାକି ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ଭାବେ ଗଢ଼ି ତୋଳିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା । ତାଙ୍କର ନିଷ୍ଠାପର ଉଦ୍ୟମ ଫଳରେ ତତ୍କାଳୀନ ବଡ଼ଲାଟ୍ ଲର୍ଡ଼ କର୍ଜନ ସମ୍ବଲପୁର ଅଞ୍ଚଳକୁ ମଧ୍ୟପ୍ରଦେଶରୁ ଅଲଗା କରି ଓଡ଼ିଶାରେ ମିଶାଇ ଥିଲେ । ମଧୁବାବୁଙ୍କର ଲର୍ଡ଼ କର୍ଜନଙ୍କୁ ସାକ୍ଷାତର ଫଳସ୍ୱରୂପ ତତ୍କାଳୀନ ସରକାରଙ୍କ ପକ୍ଷରୁ 'ରିସେଲ୍ ସର୍କୁଲାର' ପ୍ରକାଶ ପାଇଲା । ସେଥିରେ ମଧ୍ୟପ୍ରଦେଶ, ବଙ୍ଗଳା ଏବଂ ମାନ୍ଦ୍ରାଜ ଅଧୀନରେ ଥିବା ଓଡ଼ିଆ ଅଞ୍ଚଳଗୁଡ଼ିକୁ ଓଡ଼ିଶା ଡିଭିଜନ୍‌ରେ ମିଶ୍ରଣ ପାଇଁ ସୁପାରିସ୍ କରାଯାଇଥିଲା । ମଧୁବାବୁ ୧୯୧୭ ମସିହାରେ ମଣ୍ଟେଗୁ-ଚେମସ୍‌ଫୋର୍ଡ଼ଙ୍କୁ ସାକ୍ଷାତ କରି ଓଡ଼ିଆ ଭାଷାଭାଷୀ ଅଞ୍ଚଳର ମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନ ନିମନ୍ତେ ଦାବି ଉପସ୍ଥାପନ କରିଥିଲେ । ପୁନର୍ବାର ୧୯୩୧ ମସିହାରେ ଓଡନେଲ୍ କମିଟି ଆଗରେ ମଧ ଏହି ଦାବିର ପୁନରାବୃତ୍ତି କରିଥିଲେ । ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନ ତାଙ୍କ ଜୀବନର ମୂଳ ଲକ୍ଷ୍ୟ ଥିଲା । ଏପରିକି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମନ୍ତେ ମଧୁବାବୁ ଏକାଧିକବାର ଲଣ୍ଡନ ଯାତ୍ରା କରି ସେଠାରେ ସ୍ୱତନ୍ତ୍ର ପ୍ରଦେଶ ଗଠନର ଯଥାର୍ଥତା ସଂପର୍କରେ ବିଲାତ ସରକାରଙ୍କ ନିକଟରେ ବଳିଷ୍ଠ ଯୁକ୍ତି ଉପସ୍ଥାପନ କରିଥିଲେ ।

ବିଚ୍ଛିନ୍ନାଞ୍ଚଳ ସମେତ ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ଏବଂ ଓଡ଼ିଶାରେ କୁଟୀର ଶିଳ୍ପର ବିକାଶ ସହିତ କୃଷି, ବାଣିଜ୍ୟ, ଶିକ୍ଷା ଓ ସଂସ୍କୃତି କ୍ଷେତ୍ରରେ ଏକ ନୂତନ ଜାଗରଣ ସୃଷ୍ଟି କରିବା ସକାଶେ ଉତ୍କଳ ସମ୍ମିଳନୀ ମାଧ୍ୟମରେ ମଧୁବାବୁ ସର୍ବଦା ଉଦ୍ୟମରତ ଥିଲେ । ତାଙ୍କର ଜୀବନକାଳ ମଧ୍ୟରେ ସେ ଦୁଇଥର ଉତ୍କଳ ସମ୍ମିଳନୀର ସଭାପତି ଭାବେ ମନୋନୀତ ହୋଇଥିଲେ- ପ୍ରଥମେ ୧୯୧୩ ମସିହାରେ ପୁରୀଠାରେ ହୋଇଥିବା ନବମ ଅଧିବେଶନ

ପାଇଁ ଏବଂ ୧୯୧୮ ମସିହାରେ କଟକଠାରେ ଅନୁଷ୍ଠିତ ହୋଇଥିବା ସ୍ୱତନ୍ତ୍ର ଅଧିବେଶନ ପାଇଁ ।

୧୯୧୩ ମସିହା ଜାନୁଆରୀ ୨୦ ତାରିଖରେ ମଧୁବାବୁ ଓଡ଼ିଶାର ପ୍ରଜା ପ୍ରତିନିଧି ଭାବେ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାର ସଦସ୍ୟ ଭାବେ ମନୋନୀତ ହୋଇଥିଲେ ଏବଂ ସେହିବର୍ଷ ସେ ଭାରତୀୟ ବିଧାନ ପରିଷଦକୁ ସର୍ବପ୍ରଥମ ଓଡ଼ିଆ ସଭ୍ୟ ଭାବେ ମଧ ମନୋନୀତ ହୋଇଥିଲେ । ୧୯୨୦ ମସିହା ନଭେମ୍ବର ୩୦ ତାରିଖରେ ମଧୁସୂଦନ ଦାସ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାକୁ ନିର୍ବାଚିତ ହୋଇ ୧୯୨୧ ମସିହା ଏପ୍ରିଲ ୨୨ ତାରିଖରେ ବିହାର-ଓଡ଼ିଶା ସରକାରରେ ସ୍ୱାୟତ୍ତ ଶାସନ ମନ୍ତ୍ରୀ ଭାବେ ଦାୟିତ୍ୱ ଗ୍ରହଣ କରିଥିଲେ । ମଧୁବାବୁଙ୍କ ମତରେ ''ମନ୍ତ୍ରୀମାନେ ହେଲେ ଜନସାଧାରଣଙ୍କର ସେବକ, ଜନସେବା ପାଇଁ ମନ୍ତ୍ରୀମାନେ ଦରମା ନେବା ଅନୁଚିତ ।'' ସରକାର ମଧୁବାବୁଙ୍କର ଏହି ମତ ଗ୍ରହଣ ନକରିବାରୁ ସେ ମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ ।

ମଧୁବାବୁ କହୁଥିଲେ ''ଶିଳ୍ପର ଉନ୍ନତି ବିନା ଜାତିର ଅର୍ଥନୈତିକ ବିକାଶ ଅସମ୍ଭବ ।'' ସେଥିପାଇଁ ସେ ପ୍ରତିଷ୍ଠା କରିଥିଲେ 'ଉତ୍କଳ ଟ୍ୟାନେରୀ', ଯେଉଁଥିରୁ ଉତ୍ପାଦିତ ଜୋତାର ସେତେବେଳେ ସମଗ୍ର ଦେଶରେ ଚାହିଦା ଥିଲା । ଆଉ ମଧ କଟକର ସୁନା-ରୂପା ତାରକସି କାମର ବିକାଶ ଘଟାଇବା ପାଇଁ ସେ କଟକଠାରେ ପ୍ରତିଷ୍ଠା କରିଥିଲେ 'ଓଡ଼ିଶା ଆର୍ଟଓୟାର୍', ଯାହାର ଉତ୍ପାଦିତ ସାମଗ୍ରୀକୁ ନେଇ ସେ ବିଲାତଠାରେ ଏକ ପ୍ରଦର୍ଶନୀ ଆୟୋଜନ କରିଥିଲେ ଏବଂ ଇଂରେଜମାନଙ୍କୁ ବୁଝାଇ ଦେଇଥିଲେ ଯେ ଓଡ଼ିଆ ବଣିଆମାନେ କିଭଳି ବିନା ଯନ୍ତ୍ରପାତିରେ ଧାତୁଦ୍ରବ୍ୟର ଗୁଣ ଜାଣନ୍ତି । ଏହିସବୁ ଅନୁଷ୍ଠାନ ତାଙ୍କ ନିଜ ପ୍ରଚେଷ୍ଟା ତଥା ସ୍ୱ-ଅର୍ଥରେ ପରିଚାଳିତ ହେଉଥିଲା । ଉତ୍କଳ ଟ୍ୟାନେରୀ ପାଇଁ ସେ କରିଥିବା ଋଣ ପରିଶୋଧ କରି ନପାରି ନିଜର କଟକ ଓ ପୁରୀଠାରେ ଥିବା ଜମି ଓ ଘର ବନ୍ଧକ ତଥା ବିକ୍ରି କରି ଦେଇଥିଲେ । ତଥାପି ସେ ଭାଙ୍ଗିପଡ଼ି ନଥିଲେ । ଓଡ଼ିଆ ଜାତିର ଉନ୍ନତି ତଥା ସ୍ୱାଭିମାନ ପ୍ରତିଷ୍ଠା ପାଇଁ ଅକୁଣ୍ଠିତ ଚିତ୍ତରେ ସେ ନିଜର ସର୍ବସ୍ୱ ଦାନ କରି ଯାଇଛନ୍ତି । ଓଡ଼ିଆ ଜାତି କିପରି ଦେଶ ବିଦେଶରେ ସମ୍ମାନିତ ହେବ, ଏହାଥିଲା ତାଙ୍କର ଏକମାତ୍ର ଧ୍ୟେୟ ।

ଓଡ଼ିଆ ସାହିତ୍ୟର ନବଜାଗରଣରେ ମଧୁବାବୁଙ୍କର ଭୂମିକା ଥିଲା ଅନବଦ୍ୟ । ମଧୁବାବୁଙ୍କ ରଚିତ କାବ୍ୟକବିତା ଓଡ଼ିଆ ଜାତିକୁ ନୂତନ ଦିଗନ୍ତର ସନ୍ଧାନ ଦେବା ସଂଗେସଂଗେ ପ୍ରତ୍ୟେକ ଓଡ଼ିଆଙ୍କ ପ୍ରାଣରେ ଭରି ଦେଇଥିଲା ଜାତୀୟତାର ପ୍ରେମ ବହ୍ନି । ତାଙ୍କ ରଚିତ 'ଉତ୍କଳ ସନ୍ତାନ' ହେଉ ଅଥବା 'ସନ୍ତାନର ଉକ୍ତି' ହେଉ, 'ଜାତି ଇତିହାସ' ହେଉ କିମ୍ବା 'ଜନନୀର ଉକ୍ତି' ହେଉ ସବୁ କବିତାରେ ଭରି ରହିଛି ଜନନୀ ଜନ୍ମଭୂମି ପାଇଁ ଏକ ଆବେଗପୂର୍ଣ୍ଣ ଜାତୀୟତା ଭାବ, ଯାହାକି ଆଜି ମଧ ପ୍ରତ୍ୟେକ ସ୍ୱାଭିମାନୀ ଓଡ଼ିଆ ପ୍ରାଣରେ ସ୍ପନ୍ଦନ ସୃଷ୍ଟି କରୁଛି ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ତଥା ଓଡ଼ିଆ ଜାତିର ସାମଗ୍ରିକ ବିକାଶ ମଧୁବାବୁଙ୍କର ସ୍ୱପ୍ନ ଓ ସଂକଳ୍ପ ଥିଲା । ବିଧିର ବିଧାନ କେ କରିବ ଆନ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଦୁଇବର୍ଷ ପୂର୍ବରୁ ୧୯୩୪ ମସିହା ଫେବୃଆରୀ ମାସ ୪ ତାରିଖ ଦିନ ଉତ୍କଳ ଜନନୀର ଏହି ମହାନ୍ ବରପୁତ୍ରଙ୍କର ଜୀବନ ଦୀପ ଲିଭି ଯାଇଥିଲା । ଓଡ଼ିଆ ଜାତିର ଉତ୍ଥାନ ପାଇଁ ସେ ସର୍ବଦା ଚେଷ୍ଟିତ ଥିଲେ । ଓଡ଼ିଆ ଜାତି ପାଇଁ ତାଙ୍କର ଆତ୍ମୀୟତାର ପଟାନ୍ତର ନାହିଁ । ମୃତ୍ୟୁଶଯ୍ୟାରେ ଥାଇ ସେ କହିଥିଲେ, ''ମୁଁ ଅକିଞ୍ଚନ ଚାଲିଯାଏ କିନ୍ତୁ ଓଡ଼ିଆ ଜାତି ବଞ୍ଚି ରହିଥାଉ ।'' ପ୍ରକୃତରେ ସେ ଥିଲେ ଉତ୍କଳ ଜନନୀର ଯୋଗ୍ୟତମ ସନ୍ତାନ ।



# ବିପ୍ଳବୀ ଧରଣୀଧର ଭୂୟାଁ

ବଣ ପାହାଡ଼ ଘେରା କେନ୍ଦୁଝର ଜିଲ୍ଲାରେ ମୂଳ ବାସିନ୍ଦା ଭାବେ କେଉଁ ପୁରାତନ କାଳରୁ ଭୂୟାଁ ସମ୍ପ୍ରଦାୟର ଜନଜାତିମାନେ ବାସ କରି ଆସୁଛନ୍ତି । ଭୂୟାଁ ଶବ୍ଦଟିର ମୂଳ ଅକ୍ଷର ଭୂ ଅର୍ଥାତ୍ ଭୂମି । ତେଣୁ ସେମାନେ ନିଜକୁ ଭୂମିପୁତ୍ର ଭାବେ ଦାବୀ କରିଥାଆନ୍ତି । ଭୂୟାଁ ସମ୍ପ୍ରଦାୟର ଲୋକମାନେ ଅତ୍ୟନ୍ତ ଶାନ୍ତ ଓ ସରଳ ସ୍ୱଭାବର । କିନ୍ତୁ ଯେତେବେଳେ ମାଟି ମା’ ଉପରେ ଶୋଷଣ ଓ କଷଣର ଭାର ବଢ଼ିଯାଏ ସେମାନଙ୍କ ମଧ୍ୟରେ ବିପ୍ଳବାତ୍ମକ ମନୋଭାବ ଜାଗି ଉଠେ । କେନ୍ଦୁଝର ଭୂୟାଁ ସମ୍ପ୍ରଦାୟର ଜନଜାତି ଅତୀତରେ ବହୁବାର ଅତ୍ୟାଚାରୀ ରାଜା ଓ ଇଂରେଜ ଶାସକଙ୍କ ବିରୁଦ୍ଧରେ ବିପ୍ଳବାତ୍ମକ ପନ୍ଥା ଗ୍ରହଣ କରିଛନ୍ତି, ଯାହାକି କଥିତ ଭାଷାରେ ‘ମେଳି’ ଭାବେ ଆଦୃତ । ସେ ସମସ୍ତ ମେଳି ମଧ୍ୟରୁ ୧୮୬୮ ମସିହାରେ ସଂଘଟିତ ହୋଇଥିବା ‘ରତ୍ନାମେଳି’ ଏବଂ ୧୮୯୧ ମସିହାରେ ହୋଇଥିବା ‘ଧରଣୀମେଳି’ ଓଡ଼ିଶା ଇତିହାସରେ ଲିପିବଦ୍ଧ । ଧରଣୀଧରଙ୍କ ନେତୃତ୍ୱରେ ରାଜତନ୍ତ୍ର ବିରୁଦ୍ଧରେ ହୋଇଥିବା ଏହି ବିପ୍ଳବ ଓଡ଼ିଶା ଇତିହାସରେ ଏକ ରୋମାଞ୍ଚକର ଅଧ୍ୟାୟ ।



୧୮୬୪ ମସିହା ମଇ ୫ ତାରିଖ ଦିନ କେନ୍ଦୁଝରର ଗଡ଼ଜାତର ଏକ ଅଖ୍ୟାତପଲ୍ଲୀ କୁସୁମିତାର ଏକ ଭୂୟାଁ ପରିବାରରେ ଧରଣୀଧର ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଲଇଛଣ ନାୟକ ଓ ମାତାଙ୍କ ନାମ ବାଇଗଣି ଦେବୀ । ସେ ଥିଲେ ପିତାମାତାଙ୍କର କନିଷ୍ଠ ସନ୍ତାନ । ପାଠ ପଢ଼ିବା ପାଇଁ ଧରଣୀଧରଙ୍କ ମନରେ ପ୍ରବଳ ଆଗ୍ରହ ଥିଲା । ବହୁ କଷ୍ଟରେ ସେ ମଧ୍ୟଇଂରାଜୀ ପର୍ଯ୍ୟନ୍ତ ପାଠ ପଢ଼ି ସେହି ଅଞ୍ଚଳର ଜଣେ ଶିକ୍ଷିତ ବ୍ୟକ୍ତି ରୂପେ ମୁଣ୍ଡ ଟେକିଥିଲେ । କ୍ରମେ ଧରଣୀଧର କେନ୍ଦୁଝରର ତତ୍କାଳୀନ ରାଜା ଧନୁର୍ଜୟ ନାରାୟଣ ଭଞ୍ଜଙ୍କ ସୁଦୃଷ୍ଟିକୁ ଆସିଥିଲେ ଏବଂ ଜଣେ ଶିକ୍ଷିତ ଲୋକଙ୍କୁ ରାଜକାର୍ଯ୍ୟରେ ନିଯୁକ୍ତି କରିବା ପାଇଁ ରାଜା ନିଜ ପ୍ରଚେଷ୍ଟାରେ ଧରଣୀଧରଙ୍କୁ ସର୍ଭେ ପାଠ ପଢ଼ାଇବା ପାଇଁ କଟକ ପଠାଇଥିଲେ । ସେ ଜଣେ ମେଧାବୀ ଛାତ୍ର ହୋଇଥିବାରୁ ଠିକ୍ ସମୟରେ ପାଠପଢ଼ା ଶେଷ କରି କେନ୍ଦୁଝର ଫେରି ଯାଇଥିଲେ ଏବଂ ସେଠାରେ ରାଜା ତାଙ୍କୁ ସର୍ଭେ ଓଭର୍‌ସିଅର ଭାବେ ନିଯୁକ୍ତି ଦେଇଥିଲେ । ନିଜର କର୍ତ୍ତବ୍ୟନିଷ୍ଠା ଏବଂ ସାଧୁତା ବଳରେ ଅଳ୍ପଦିନ ମଧ୍ୟରେ

ଧରଣୀଧର ରାଜା ତଥା ଅନ୍ୟମାନଙ୍କର ଶ୍ରଦ୍ଧାଭାଜନ ହୋଇ ପାରିଥିଲେ । ଏ କଥା ରାଜାଙ୍କର ସହକାରୀ ଦେବାନ୍ ବିଚିତ୍ରାନନ୍ଦ ଦାସ ସହ୍ୟ କରିପାରି ନଥିଲେ । କାରଣ ସେ ଥିଲେ ଧରଣୀଧରଙ୍କଠାରୁ କମ୍ ଶିକ୍ଷିତ ଏବଂ କ୍ଷମତାଲୋଭୀ । ଧରଣୀଧରଙ୍କୁ କିପରି ବଦ୍‌ନାମ କରାଯାଇପାରିବ, ଏହା ଥିଲା ବିଚିତ୍ରାନନ୍ଦ ଦାସଙ୍କ ମୁଖ୍ୟ ଉଦ୍ଦେଶ୍ୟ । ଧରଣୀଧରଙ୍କ କ୍ରମବର୍ଦ୍ଧିଷ୍ଣୁ ଲୋକପ୍ରିୟତା ଦେଖି ବିଚିତ୍ରାନନ୍ଦ ଦାସ କ୍ରୋଧ ଜର୍ଜରିତ ହୋଇ ରହିଥିଲେ ଏବଂ ପ୍ରତିଶୋଧ ନେବା ପାଇଁ ସୁଯୋଗ ଅପେକ୍ଷାରେ ଥିଲେ । ସୁଯୋଗ ଅନୁସନ୍ଧାନରେ ଥିବା ବିଚିତ୍ରାନନ୍ଦ ଦାସଙ୍କ ପାଇଁ ହଠାତ୍ ଏକ ସୁବର୍ଣ୍ଣ ସୁଯୋଗ ପହଞ୍ଚିଲା । କେନ୍ଦୁଝର ଓ ସିଂହଭୂମର ସୀମା ବିବାଦ ସମାଧାନ କରିବା ପାଇଁ ବିଚିତ୍ରାନନ୍ଦଙ୍କ ପରାମର୍ଶରେ କେନ୍ଦୁଝର ରାଜା ଧରଣୀଧରଙ୍କୁ ନିଯୁକ୍ତ କଲେ । ଉକ୍ତ କାର୍ଯ୍ୟ ସମ୍ପାଦନ ପାଇଁ ଧରଣୀଧର ଦୀର୍ଘ ଦିନ ଧରି ରାଜାଙ୍କ ନିକଟରେ ଅନୁପସ୍ଥିତ ରହିଲେ । ଏହାର ସୁଯୋଗ ନେଇ ଧରଣୀଧରଙ୍କ ନାମରେ ବିଚିତ୍ରାନନ୍ଦ ନାନା ପ୍ରକାର ମନଗଢ଼ା ମିଥ୍ୟା ଅଭିଯୋଗ କରି ରାଜାଙ୍କ ମନଙ୍କୁ ସମ୍ପୂର୍ଣ୍ଣ ବିଷାକ୍ତ କରି ଦେଲେ । ଫଳରେ ଧରଣୀଧର ସୀମା ସର୍ଭେୟର୍ ପଦବୀଟିକୁ ସବୁଦିନ ପାଇଁ ହରାଇଲେ । ଏହା ପରେ ଧରଣୀଧର ୪ ବର୍ଷ ପାଇଁ ମୟୂରଭଞ୍ଜ ରାଜାଙ୍କ ଅଧୀନରେ ଚାକିରି କରିଥିଲେ । ଉକ୍ତ ପଦବୀ ତ୍ୟାଗ କରି ଧରଣୀଧର ଫେରି ଆସିଥିଲେ ନିଜ ଗ୍ରାମ କୁସୁମିତାକୁ । ରାଜା ଏବଂ ରାଜ କର୍ମଚାରୀଙ୍କ ଅତ୍ୟାଚାର ସାଧାରଣ ପ୍ରଜାଙ୍କ ଉପରେ ଦିନକୁ ଦିନ ବଢ଼ି ଚାଲିଥାଏ । ଏସବୁ ଶୁଣି ଓ ଦେଖି ଧରଣୀଧରଙ୍କ ମନରେ ବିଦ୍ରୋହର ବହ୍ନି ଜଳି ଉଠିଲା । ଅତ୍ୟାଚାରର ସର୍ବାଗ୍ରେ ଥିଲା ବେଠି ପ୍ରଥା । ପ୍ରଜାମାନେବେଠି ଖଟିବା ସଂଗେସଂଗେ ସେମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ମଧ୍ୟ କରାଯାଉଥିଲା । ଧରଣୀଧରଙ୍କ ମନକୁ ଏହା ଭୀଷଣ ଆନ୍ଦୋଳିତ କରିଥିଲା ।

୧୮୯୧ ମସିହାରେ କେନ୍ଦୁଝରର ଗଡ଼ର ୧୧ କି.ମି. ଉତ୍ତରକୁ ମାଛକାନ୍ଦଣାଝର ଉପରେ ମାହାରା ନିର୍ମାଣ କରି ଉକ୍ତ ଜଳକୁ ଜଳସେଚନ କାର୍ଯ୍ୟରେ ବ୍ୟବହାର କରିବା ପାଇଁ ରାଜା ୧୦,୦୦୦ ଟଙ୍କା ମଞ୍ଜୁର କରି ଏହି ଦାୟିତ୍ୱ ବିଚିତ୍ରାନନ୍ଦ ଦାସଙ୍କ ଉପରେ ନ୍ୟସ୍ତ କରିଥିଲେ । କିନ୍ତୁ ବିଚିତ୍ରାନନ୍ଦ ଦାସ ସ୍ଥିର କଲେ ଯେ ମାହାରା ନିର୍ମାଣ କରାଯିବ ଭୂୟାଁ ପ୍ରଜାମାନଙ୍କ ବେଠିରେ । ତଦନୁଯାୟୀ ଭୂୟାଁମାନଙ୍କୁ ବାଧ୍ୟ କରାଯାଇ ଉକ୍ତ କାର୍ଯ୍ୟରେ ନିୟୋଜିତ କରାଯାଇଥିଲା ଏବଂ ଅଶେଷ ଶାରୀରିକ ନିର୍ଯ୍ୟାତନା ଦିଆଯାଇଥିଲା । ଏହା ଧରଣୀଧରଙ୍କୁ ଖୁବ୍ ବ୍ୟଥିତ କରିବା ଫଳରେ ଭୂୟାଁମାନଙ୍କୁ ଏକତ୍ରିତ କରି ଧରଣୀଧର ବିଦ୍ରୋହ ପାଇଁ ଆହ୍ୱାନ ଦେଲେ । ତାଙ୍କରି ଆହ୍ୱାନରେ ସହସ୍ର ବାଥୁନ୍, କୋହ୍ଲ, ଭୂୟାଁ ଓ ସାଉତି ଏକତ୍ରିତ ହେଲେ । ବିଦ୍ରୋହର ଅବ୍ୟବହିତ ପୂର୍ବରୁ ଧରଣୀଧର କଟକସ୍ଥିତ କମିଶନର, କଲିକତାସ୍ଥିତ ଇଂରେଜ କର୍ତ୍ତୃପକ୍ଷ ଓ ମୟୂରଭଞ୍ଜ ରାଜ୍ୟର ମ୍ୟାନେଜରଙ୍କୁ ରାଜାଙ୍କ ଅତ୍ୟାଚାର ବିଷୟରେ ଚିଠି ଲେଖି ଅବଗତ କରାଇଥିଲେ । ବିଦ୍ରୋହୀମାନେ ନିଷ୍ପତ୍ତି ନେଇଥିଲେ ଯେ ବିଚିତ୍ରାନନ୍ଦ ଦାସଙ୍କୁ ହତ୍ୟା କରିବେ ଏବଂ ରାଜାଙ୍କୁ ଗାଦିଚ୍ୟୁତ କରିବେ । ବିଦ୍ରୋହ କ୍ରମେ ଭୀଷଣ ଆକାର ଧାରଣ କଲା । ରାଜା ଏବଂ ବିଚିତ୍ରାନନ୍ଦ ଦାସ ଭୟରେ ଆନନ୍ଦପୁର ପଳାୟନ କଲେ । ବିଦ୍ରୋହ ଦମନ କରିବା ପାଇଁ ରାଜା ତାଙ୍କର ଆସିଷ୍ଟାଣ୍ଟ ସୁପରିନ୍‌ଟେଣ୍ଡେଣ୍ଟ୍ ରାୟ ନନ୍ଦକିଶୋର ବାହାଦୂର ଏବଂ ମ୍ୟାନେଜର ଫକୀର ମୋହନ ସେନାପତିଙ୍କୁ କମିଶନରଙ୍କ ନିକଟକୁ କଟକ ପ୍ରେରଣ କଲେ । ଫକୀର ମୋହନଙ୍କ ବିଚକ୍ଷଣ ବୁଦ୍ଧି ପ୍ରୟୋଗ ଫଳରେ କମିଶନର ତାଙ୍କ ପ୍ରସ୍ତାବରେ ରାଜି ହେଲେ ଏବଂ ବଙ୍ଗ ସରକାରଙ୍କୁ ଜଣାଇ ଦିଆଯିବାରୁ ବିଦ୍ରୋହ ଦମନ କରିବା ପାଇଁ ସରକାରଙ୍କ ଦ୍ୱାରା ଚାଇଁବସାର ଡେପୁଟୀ କମିଶନର୍ ଏଚ. ଡାଉସନଙ୍କୁ କମିଶନରଙ୍କ ଆସିଷ୍ଟାଣ୍ଟ ସୁପରିନ୍‌ଟେଣ୍ଡେଣ୍ଟ୍ ଭାବେ ନିଯୁକ୍ତ କରାଗଲା । ଏ ଖବର ପାଇ ବିଦ୍ରୋହୀମାନେ ଅଧିକ ଉତ୍ତେଜିତ ହେଲେ । ଧରଣୀଧର ଦୃଢ଼ ଭାବେ ନିଜକୁ କେନ୍ଦୁଝରର ଟିକାୟତ ଘୋଷଣା କଲେ ଏବଂ ରାଇସୁଆଁର ଏକ ଆମ୍ବତୋଟା ମଧ୍ୟରେ ଦରବାର ପ୍ରତିଷ୍ଠା କରି ପ୍ରଜାମାନଙ୍କୁ ବିଭିନ୍ନ ଆଦେଶ ଜାରି କଲେ । ତନ୍ମଧ୍ୟରୁ ରାଜାଙ୍କ ଗଡ଼ ଆକ୍ରମଣ କରିବା ପାଇଁ ଯୋଜନା ଅନ୍ୟତମ ଥିଲା । ମାତ୍ର ଫକୀର ମୋହନଙ୍କ ବିଚକ୍ଷଣ କୁଟନୀତି ଯୋଗୁଁ ଗଡ଼ ଆକ୍ରମଣ ଯୋଜନା ପଣ୍ଡ

ହୋଇଥିଲା । ସେନାଧ୍ୟକ୍ଷ ଡାଉସନ୍ ଧରଣୀଧର ଓ ଅନ୍ୟାନ୍ୟ ବିଦ୍ରୋହୀମାନଙ୍କୁ ଧରିବା ପାଇଁ ବିଭିନ୍ନ କୌଶଳ ସ୍ଥିର କରି ଆତ୍ମସମର୍ପଣ କରିବାକୁ ପ୍ରବର୍ତ୍ତାଇବା ପାଇଁ ଜଣେ ସବ୍-ଇନିସ୍‌ପେକ୍ଟର ଏବଂ ଜଣେ କନେଷ୍ଟବଳଙ୍କୁ ଧରଣୀଧରଙ୍କ ନିକଟକୁ ପଠାଇ ଥିଲେ । ମାତ୍ର ସ୍ୱାଭିମାନର ମୂର୍ତ୍ତିମନ୍ତ ପ୍ରତୀକ ଧରଣୀଧର ଆତ୍ମସମର୍ପଣ କରିଥାନ୍ତେ ବା କିପରି ? ଡାଉସନ୍‌ଙ୍କୁ ସାକ୍ଷାତ କରିବା ପାଇଁ ତାଙ୍କୁ ପ୍ରବର୍ତ୍ତା ଗଲା । ବାଟରେ ପୁତୁଲିଆ ଓ ରୁଚିରୀ ନାମକ ଦୁଇଟି ଗ୍ରାମ ମଧ୍ୟରେ ଥିବା ସ୍ଥାନରେ ଡାଉସନ୍ ସାହେବ ତାଙ୍କ ସୈନ୍ୟସାମନ୍ତ ସହ ଆସୁଥିବାର ଦେଖି ଧରଣୀଧର ହାତୀ ପିଠିରୁ ଓହ୍ଲାଇ ତାଙ୍କୁ ସ୍ୱାଗତ ଜଣାଇଲେ । ପୂର୍ବ ଚକ୍ରାନ୍ତ ଅନୁଯାୟୀ ଡାଉସନ୍‌ଙ୍କ ସୈନ୍ୟମାନେ ଧରଣୀଧରଙ୍କୁ ଘେରିଯାଇ ବନ୍ଦୀ କରିଥିଲେ । ଧରଣୀଧର ବନ୍ଦୀ ହୋଇଯିବା ପରେ ତାଙ୍କର ଅନୁଗାମୀମାନେ ହତୋତ୍ସାହିତ ହୋଇ ଯାଇଥିଲେ । ତଥାପି ସେମାନଙ୍କ ମଧ୍ୟରୁ ଅନେକଙ୍କ ରକ୍ତ ଶିଥିଳ ହୋଇ ନଥିଲା । ମାତ୍ର ଇଂରେଜମାନଙ୍କ ପ୍ରଚଣ୍ଡ ଶକ୍ତି ଆଗରେ ବିଦ୍ରୋହୀମାନେ ଅଧିକ କାଳ ତିଷ୍ଠି ପାରି ନଥିଲେ ।

ଶେଷରେ ଆରମ୍ଭ ହୋଇଥିଲା ବିଚାର ପର୍ବ । ୨୮ ଜଣ ବନ୍ଦୀଙ୍କୁ ଭିନ୍ନ ଭିନ୍ନ ସମୟକାଳ ପର୍ଯ୍ୟନ୍ତ କାରାଦଣ୍ଡ ଦିଆଯାଇଥିଲା । ୪୦ ଜଣଙ୍କୁ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡ ଦିଆଯାଇଥିଲା । ଧରଣୀଧରଙ୍କୁ ସାତ ବର୍ଷ ସଶ୍ରମ କାରାଦଣ୍ଡ ଦିଆଯାଇ କଟକ ଜେଲ୍‌ରେ ରଖାଯାଇଥିଲା । ୧୮୯୭ ମସିହାରେ ସେ କାରାମୁକ୍ତ ହୋଇଥିଲେ । କାରାମୁକ୍ତ ହେବା ପରେ ତାଙ୍କ ଜୀବନରେ ଏକ ବିରାଟ ପରିବର୍ତ୍ତନ ହୋଇଥିଲା । ସେ ପୁରୀ ସମୁଦ୍ରକୂଳରେ ଥିବା ବାଙ୍କୀ ମୁହାଣରେ ତପସ୍ୟାରତ ହୋଇଥିଲେ । ସେଠାରୁ ୧୯୧୨ ମସିହାରେ କଟକ ଜିଲ୍ଲାର ଆଳି ଅଞ୍ଚଳକୁ ଯାଇ ସେଠାରେ ଏକ ନିକାଞ୍ଚନ ସ୍ଥାନରେ ମଠ ନିର୍ମାଣ କରି ମୃତ୍ୟୁ ପର୍ଯ୍ୟନ୍ତ ଏକନିଷ୍ଠ ସନ୍ନ୍ୟାସ ଜୀବନଯାପନ କରିଥିଲେ । ଶେଷରେ ୧୯୪୪ ମସିହା ମଇ ୧୬ ତାରିଖ ବୈଶାଖ ପୂର୍ଣ୍ଣିମା ଦିନ ଏହି ମହାନ୍ ବିଦ୍ରୋହୀଙ୍କର ମହାପ୍ରୟାଣ ଘଟିଲା ।

ବିପ୍ଳବୀ ଧରଣୀଧର ଅନ୍ୟାୟ ରାଜ ଶାସନ ଓ ଇଂରେଜ ଶାସକଙ୍କ ବିରୁଦ୍ଧରେ ଲଢ଼ି ପରାଭୂତ ହୋଇଥିଲେ ମାତ୍ର ତାଙ୍କର ଦୁଃସାହସିକ ସଂଗ୍ରାମ ଅତ୍ୟାଚାରୀମାନଙ୍କ ବିରୁଦ୍ଧରେ ଅବିରତ ଜାରି ରହିଥିଲା । ସେ ଥିଲେ ଜନମାନସର ନେତା । ବିର୍ସା ମୁଣ୍ଡା, ରତ୍ନା ନାୟକ, ଚକ୍ରା ବିଶୋଇ ପ୍ରମୁଖ ଆଦିବାସୀ ମୁକ୍ତି ଯୋଦ୍ଧାଙ୍କର ସେ ଥିଲେ ଜଣେ ସମକକ୍ଷ ବିପ୍ଳବୀ । ଧରଣୀଧର ଏକ ଚିର ଅମର ଯୁଗ-ପୁରୁଷ ଭାବରେ ଆମର ନିତ୍ୟ ସ୍ମରଣୀୟ । ଏହି ମହାନ୍ ବିପ୍ଳବୀଙ୍କର ମହତ୍ ଆଦର୍ଶ ଯୁଗେ ଯୁଗେ ଏ ଜାତିକୁ ପ୍ରେରଣା ଯୋଗାଉଥିବ ଏହା ନିଃସନ୍ଦେହ ।

